# ମହାନୁଭବ ମହାରାଜା



ଅଇଁଠୁ ସାହୁ




ଆବିର୍ଭାବ ୩୧ ମାର୍ଚ୍ଚ ୧୯୧୨
ତିରୋଭାବ ୨୩ ଫେବୃଆରୀ ୧୯୭୫

# MAHANUBHABA MAHARAJA

Three bio-sketeches of

√ Maharaja Rajendra Narayan Singhdeo

(Former Maharaja of Balangir Patna ard
Ex-Chief Minisister of Orissa)

By

**Ainthu Sahoo** (B.A. LLB)

Former Minister of Orissa and ex-member of Parliament

Published by :

**PUJYA PUJA PARISHAD**
Kharavela Ashram
42, Kharavel Nagar
Bhubaneswar-751001

In Association with :

**HATIGURUDEV MATHA**
Hatigurudev Lane
Baselisahi, Puri-752001

Printed at :

C.T. Print
D-9, Dumuduma Housing Board
Colony, Bhubaneswar.

**Response Rs. 10/- and above.**

# ଉପୋଦ୍‌ଘାତ

• ଚିତ୍ତରଂଜନ ମିଶ୍ର

ମହାରାଜା ରାଜେନ୍ଦ୍ର ନାରାୟଣ ସିଂଦେଓଙ୍କ ସହିତ ମୋର ପ୍ରଥମ ସାକ୍ଷାତ ଆଜିକୁ ପ୍ରାୟ ୩୧ ବର୍ଷ ତଳେ ହୋଇଥିଲା । ରେଭେନ୍ସା କଲେଜ ଛାତ୍ର ସଂସଦ ସଭାପତି ନିର୍ବାଚିତ ହେବା ପରେ ଦୀକ୍ଷାଗୁରୁ ମଧୁ ମହାନ୍ତିଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଓଡ଼ିଶାର ସାହିତ୍ୟିକ ଓ ସାଂସ୍କୃତିକ ନବଜାଗରଣ ନିମନ୍ତେ କେତେକ ନୂଆ ଅଭିଯାନ ମୁଁ ଆରମ୍ଭ କରିଥାଏ । ଉତ୍କଳ ଦିବସ ପାଳନ, ପୁସ୍ତକ ପ୍ରସାର ପକ୍ଷ ଏବଂ କଳ୍କୀ ସଂଗଠନ ସେ ମଧ୍ୟରୁ କେତେକ କାର୍ଯ୍ୟକ୍ରମ ଥିଲା । ଓଡ଼ିଶା ସରକାର ଏହିସବୁ କାର୍ଯ୍ୟକ୍ରମକୁ ଗ୍ରହଣ କରିବା ପାଇଁ ମୁଁ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ବାସଭବନରେ ଦୁଇ ତିନି ଥର ଏବଂ ଖାରବେଳନଗରସ୍ଥିତ ସ୍ୱତନ୍ତ୍ର ଦଳର କାର୍ଯ୍ୟାଳୟରେ ଥରେ ଭେଟିଥିଲି । କେଉଁଥର ମନ୍ତ୍ରୀ ରାଜ ବଲ୍ଲଭ ମିଶ୍ରତ ଆଉ କେଉଁଥର ହରିହର ପଟେଲ ମୋର ଗାଇଡ୍ ଭାବରେ ମହାରାଜାଙ୍କ ପାଖକୁ ମୋ ସହିତ ଯାଉଥିଲେ । ଥରେ ମୋର ମାମୁଁ ଶିକ୍ଷାବିତ୍ ହରିହର ମିଶ୍ର ସଂଯୋଗକୁ ସେଠାରେ ଉପସ୍ଥିତ ଥିଲେ । ସେ ପର୍ଯ୍ୟନ୍ତ ଆମ ମାମୁଁ ଭଣଜାଙ୍କ ସଂପର୍କ ବିଷୟରେ ମହାରାଜା ଜାଣିନଥିଲେ । ସେ ଦିନ ସେ ଭାରି ଖୁସି ହୋଇ ମୋତେ ମାମୁଁଙ୍କ ଭଳି ସ୍ପଷ୍ଟବାଦୀ ହେବାକୁ ଉପଦେଶ ଦେଇଥିଲେ । କହିବା ବାହୁଲ୍ୟ ମୋର ଅଜା ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର ମଧ ସ୍ପଷ୍ଟବାଦିତା ଉପରେ ଗୁରୁତ୍ୱ ଦେଇଆସିଥିଲେ ସାରାଜୀବନ । ଅବଶ୍ୟ ଆମେ ଅଜା ନାତି ଏଥିପାଇଁ ଯାହା ପାଇଛୁ ଏବଂ ଯାହା ଭୋଗିଛୁ ତାହାର ସମୀକ୍ଷା ଏଠି ଅନାବଶ୍ୟକ । ହେଲେ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ନିଜର ଆଦର୍ଶ ପଥରୁ ବିଚ୍ୟୁତ ନହେବାର ମୂଲ୍ୟ ଦେଇଥିବା କଥା ସମସ୍ତଙ୍କୁ ଜଣା ।

ମହାରାଜାଙ୍କ ତିରୋଧାନ ଆକସ୍ମିକ ନହେଲେ ମଧ ଅପ୍ରତ୍ୟାଶିତ ଥିଲା । ତାଙ୍କ ମୃତ୍ୟୁର ପରଦିନ ସଂଧ୍ୟାରେ ଭୁବନେଶ୍ୱର ଓ କଟକରେ ରହୁଥିବା ତାଙ୍କର ବହୁ

ପ୍ରଶଂସକ ଓ ଆତ୍ମୀୟ ତାଙ୍କ ପ୍ରତି ଶେଷ ସମ୍ମାନ ଜଣାଇବା ପାଇଁ ଭୁବନେଶ୍ୱର ବିମାନ ବନ୍ଦରକୁ ଆସିଥିଲେ । ମୁଁ ସେତେବେଳେ କଟକରେ ବାରିଷ୍ଟର ରଣଜିତ୍ ମହାନ୍ତିଙ୍କର ଜଣେ ଶିଷ୍ୟ ହିସାବରେ ଓକିଲାତି କରୁଥାଏ । ବାରିଷ୍ଟର ମହାନ୍ତିଙ୍କ ସହ ମୁଁ ମଧ ଭୁବନେଶ୍ୱର ଆସିଥିଲି ପାଟଣା ମହାରାଜାଙ୍କ ଶେଷ ଦର୍ଶନ ପାଇଁ । କିଛି ଦିନ ପୂର୍ବରୁ ମହାରାଜାଙ୍କ ଭୁବନେଶ୍ୱର ବାସଭବନର ପ୍ରସ୍ତାବିତ ଦ୍ୱିତୀୟ ମହଲା ଘର ନିର୍ମାଣ ସଂପର୍କରେ ସରକାରଙ୍କ ପକ୍ଷରୁ ଆରମ୍ଭ ହୋଇଥିବା ଏକ ମୋକଦ୍ଦମାରେ ରଣଜୀତ ବାବୁଙ୍କ ସହିତ ମୁଁ ମଧ ଓକିଲ ରହିଥିଲି । ସେ ମୋକଦ୍ଦମା ସଂପର୍କରେ ମୁଁ ଥରେ ଦୁଇ ଥର ଭୁବନେଶ୍ୱର ଆସି ତାଙ୍କ ସାକ୍ଷାତ ପାଇ ନଥିଲି । ସେତେବେଳକୁ ମହାରାଜା ଅସୁସ୍ଥ ଥିଲେ ମଧ ସେ ବିଷୟରେ ପରିବାର ବାହାରର କେହି ପ୍ରାୟ ଜାଣିନଥିଲେ । ପରେ ମୁଁ ତାଙ୍କ ଆତ୍ମୀୟମାନଙ୍କଠାରୁ ଶୁଣିବାକୁ ପାଇଲି ଯେ କର୍କଟ ରୋଗ ଭଳି ଏକ ଯନ୍ତ୍ରଣା ଦାୟକ ବ୍ୟାଧିକୁ ମଧ ମହାରାଜା ରାଜକୀୟ ଭାବେ ସହ୍ୟ କରୁଥିଲେ ।

ମହାରାଜା ରାଜେନ୍ଦ୍ର ନାରାୟଣଙ୍କ ଭଳି ଜଣେ ସର୍ବଗୁଣ ସଂପନ୍ନ ତ୍ୟାଗପୁତ ରାଜର୍ଷିଙ୍କୁ ଓଡ଼ିଶା ଉପଯୁକ୍ତ ସମ୍ମାନ ଦେଇପାରିନି ଏକଥା କହିବା ବାହୁଲ୍ୟମାତ୍ର । ତାଙ୍କର ଦୁଇଜଣଯାକ ପୁଅ ରାଜରାଜ ଓ ଅନଙ୍ଗଉଦୟ ରାଜନୀତିରେ ପ୍ରବେଶ କଲେ । ରାଜରାଜ ଲୋକସଭାକୁ ନିର୍ବାଚିତ ହେବାପରେ ରାଜନୀତିରୁ ବିତସ୍ପୃହ ହୋଇଥିବାବେଳେ ଅନଙ୍ଗଉଦୟ ୧୯୭୪ ରେ ଓଡ଼ିଶା ବିଧାନସଭାରେ ପ୍ରବେଶ କରି ତିନୋଟି ମନ୍ତ୍ରୀମଣ୍ଡଳରେ ସଦସ୍ୟ ରହିଛନ୍ତି । ମହାରାଜାଙ୍କ ନାତି ଏବଂ ରାଜରାଜଙ୍କ ପୁତ୍ର କନକ ବର୍ଦ୍ଧନ ସିଂହଦେଓ ଏବଂ ତାଙ୍କ ପତ୍ନୀ ସଂଗୀତା କୁମାରୀ ରାଜନୀତିରେ ସକ୍ରୀୟ ଅଛନ୍ତି । କନକ ବର୍ଦ୍ଧନ ଶିଳ୍ପ ବିଭାଗର ମନ୍ତ୍ରୀ ଦାୟିତ୍ୱ ତୁଲାଉ ଥିବାବେଳେ ସଂଗୀତା ତାଙ୍କ ଗୋସେଇଁ ଶ୍ୱଶୁର ଏବଂ ଶ୍ୱଶୁରଙ୍କ ଲୋକସଭା ନିର୍ବାଚନ ମଣ୍ଡଳୀ ବଲାଙ୍ଗିରରୁ ଲୋକସଭାରେ ପ୍ରତିନିଧିତ୍ୱ କରୁଛନ୍ତି । କନକ ସଂଗୀତା ଦମ୍ପତିଙ୍କ ସହ ମୋର ଘନିଷ୍ଠତା ନଥିବାରୁ ମହାରାଜା ରାଜେନ୍ଦ୍ରଙ୍କ ସ୍ମୃତିରକ୍ଷା ନିମନ୍ତେ ସେମାନଙ୍କଠାରୁ ଆମେ କିଛି ଆଶା କରିନୁ । ତେବେ ମହାରାଜାଙ୍କ ସୁପୁତ୍ର ଅନଙ୍ଗ ଉଦୟ ଆମକୁ ଏ ଦିଗରେ ଉତ୍ସାହିତ କରିଥିବାରୁ 'ପୂଜ୍ୟପୂଜା ପରିଷଦ' ପକ୍ଷରୁ ମୁଁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଏ ପୁସ୍ତକର ଲେଖକ ଅଇଁଠୁ ସାହୁଙ୍କ ସହିତ ମୋର ପରିଚୟ ଅତି ପୁରୁଣା ନହେଲେ ମଧ୍ୟ ଅନ୍ତତଃ ୩୦ ବର୍ଷର । ବୟସର ତାରତମ୍ୟ ସତ୍ତ୍ୱେ ଆମ ଦୁହିଁଙ୍କ ମଧ୍ୟରେ ଏକ ପ୍ରଗାଢ଼ ମୈତ୍ରୀ ସଂପର୍କ ରହିଛି । ମହାରାଜାଙ୍କ ଭଳି ଅଇଁଠୁ ବାବୁ ମଧ୍ୟ ସ୍ପଷ୍ଟବାଦୀ, ସାହସୀ ଓ ସଂଗଠନ କୁଶଳୀ । ଏ ପୁସ୍ତକରେ ସନ୍ନିବେଶିତ ତାଙ୍କର ତିନୋଟି ଲେଖା ମଧ୍ୟରୁ ପ୍ରଥମଟି ପ୍ରାୟ ୨୦ ବର୍ଷ ତଳେ ଏକ କ୍ଷୁଦ୍ର ପୁସ୍ତିକା ଆକାରରେ ପ୍ରକାଶ ପାଇ ବୁଦ୍ଧିଜୀବୀ ମହଲରେ ଆଦୃତ ହୋଇଥିଲା । 'ମହାନୁଭବ ମହାରାଜା' ଶୀର୍ଷକ ଦ୍ୱିତୀୟ ଲେଖାଟି ସ୍ୱରାଜ୍ୟରେ ପ୍ରକାଶ ପାଇଥିଲା । ଅଳ୍ପ ଦିନ ତଳେ ଅଇଁଠୁ ବାବୁ 'ପଶ୍ଚିମ ଓଡ଼ିଶା ବିକାଶ ପରିଷଦ'ର ଅଧ୍ୟକ୍ଷ ନିଯୁକ୍ତି ହେବା ପରେ ତାଙ୍କ ସହିତ ଟେଲିଫୋନ୍ ବାର୍ତ୍ତାଳାପ ହିଁ ଏ ପୁସ୍ତକ ପ୍ରକାଶନର ଉତ୍ସ । ମହାରାଜାଙ୍କ ସଂପର୍କରେ ଓଡ଼ିଶାବାସୀଙ୍କୁ ବିଶେଷତଃ ନୂଆ ପିଢ଼ୀଙ୍କୁ ଆଉଥରେ ପରିଚିତ କରାଇବାର ଅଭିଳାଷ ଅଇଁଠୁ ବାବୁ ଓ ଅନଙ୍ଗ ଉଦୟଙ୍କ ଅକୁଣ୍ଠ ସମର୍ଥନ ହେତୁ ପୂରଣ ହୋଇପାରିଛି । ତେବେ ସୀମିତ ସମୟ ମଧ୍ୟରେ ଏହାର ମୁଦ୍ରଣ ଅନେକ ତ୍ରୁଟି ବିଚ୍ୟୁତିକୁ ପ୍ରଶ୍ରୟ ଦେଇଛି । ସେଥିପାଇଁ ସୁଧୀପାଠକ ବୃନ୍ଦଙ୍କ ନିକଟରେ ଆମେ କ୍ଷମାଭିକ୍ଷା କରୁଛୁ । 'ପୂଜ୍ୟପୂଜା ପରିଷଦ'ର ସଂପାଦକ ଯୁବ ସାହିତ୍ୟିକ ହରିହର ଶତପଥି ଏହି ପୁସ୍ତକ ପ୍ରକାଶନ ପାଇଁ ସବୁଠାରୁ ବେଶୀ ପରିଶ୍ରମ କରିଛନ୍ତି । ତାଙ୍କୁ ଓ ଦୈନିକ 'ମୁକ୍ତ ମଣ୍ଡପ', ମହିଳା ପତ୍ରିକା 'ପଲ୍ଲୀବଧୂ', 'ମିଡ଼ିଆ ସର୍ଭିସ୍ ସେଣ୍ଟର' ଏବଂ 'ଅଡ଼ିଓ ଭିଜୁଆଲ୍ ପବ୍ଲିସିଟି କନ୍‌ସଲ୍‌ଟାନ୍ସି'ର କର୍ମକର୍ତ୍ତାମାନଙ୍କୁ ଆମ ଅନୁଷ୍ଠାନ ପକ୍ଷରୁ ଧନ୍ୟବାଦ ଅର୍ପଣ କରୁଛୁ । ପାଠକମାନେ ସେମାନଙ୍କ ମତାମତ ଲିଖିତ ଆକାରରେ ଆମକୁ ଜଣାଇବା ପାଇଁ ପୂଜ୍ୟପୂଜା ପରିଷଦ ପକ୍ଷରୁ ବିନୀତ ଅନୁରୋଧ ।


**ସଭାପତି**

**ପୂଜ୍ୟପୂଜା ପରିଷଦ**

ଖାରବେଳ ଆଶ୍ରମ

୪୨- ଖାରବେଳନଗର,

ଭୁବନେଶ୍ୱର-୭୫୧୦୦୧

# WE PROPOSE

To perpetuate the sacred memory of √ Maharaja Rajendra Narayan Singh Deo, the ex-Chief Minister of Orissa and a former member of Loksabha

# PUJYA PUJA PARISHAD

***Presents the proposals as mentioned below*** :

for the consideration of the governments both central & state and the people of India; [Orissa in Particular)

- The road from Raj Bhaban to Nandan Kanan in Bhubaneswar, now whimsically called "Vidyut Marg" be named after Maharaja Rajendra Narayan Sighdeo and be registered as "**MAHARAJA RAJENDRA SARANI**"
- The Head quarters of western Orissa Development council be named **MAHARAJA RAJENDRA BHAVAN.**
- A well documented biograhical film on the departed leader to be produced by the state Government and broadcast in National channel of **DOOR DARSHAN.**
- The life and time of this great son of soil be put in permanent Black & white in shape of books and souvenir publications in Oriya, Hindi, English and other Indian Languages.

## LAST BUT NOT THE LEAST

- Let the people of Orissa and their leaders inculcate the Magnanimity, & Demccratic spirit of the departed destiny maker of Orissa.

# ସିଂହଦେଓ ଜୀବନର ବିଭିନ୍ନ ସୋପାନରେ



ଏକ ବର୍ଷ ଶିଶୁ



୧୯୨୦



୧୯୩୫



୧୯୩୭

ସିଂହଦେଓ ଦମ୍ପତି ରାଜେନ୍ଦ୍ର ନାରାୟଣ ଓ କୈଳାସ କୁମାରୀ : ୧୯୩୨



୧୯୨୩



୧୯୨୮



ମୁଖ୍ୟମନ୍ତ୍ରୀ ସିଂହଦେଓ ଚନ୍ଦ୍ରଲୋକରୁ ଆସିଥିବା ପ୍ରସ୍ତର ପ୍ରଦର୍ଶନୀ ଉଦ୍‌ଘାଟନ କରୁଛନ୍ତି



୧୯୬୮ରେ ମୁଖ୍ୟମନ୍ତ୍ରୀ ସିଂହଦେଓଙ୍କ ଆମେରିକା ଗସ୍ତ ସମୟରେ କେତେ ସ୍ଥାନୀୟ ବ୍ୟକ୍ତିମାନଙ୍କ ସହ ଆଲୋଚନା । ସାଙ୍ଗରେ ଥିଲେ ଦ୍ୱିତୀୟ ପୁତ୍ର ଅନଙ୍ଗ ଉଦୟ (ସଂପୂର୍ଣ୍ଣ ଡ଼ାହାଣରେ) ଯେ ବର୍ତ୍ତମାନ ଓଡ଼ିଶାର ଶକ୍ତିମନ୍ତ୍ରୀ ।

# ମହାନ୍ ମହାରାଜା

ଭାରତର ସ୍ୱନାମଧନ୍ୟ ଖ୍ୟାତନାମା ମହାରାଜାମାନଙ୍କ ମଧ୍ୟରେ ମହାରାଜା ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓ ଥିଲେ ଅନ୍ୟତମ । ତାଙ୍କୁ ମହାନ୍ ମହାରାଜା କହିଲେ ଅତ୍ୟୁକ୍ତି ହେବ ନାହିଁ । ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱ ତାଙ୍କ ସହ ରାଜନୀତିରେ କାମ କରିବାର ସୁଯୋଗ ଘଟିଥିଲା । ମହାରାଜାଙ୍କ ଜୀବନର ସାୟାହ୍ନରେ ତତ୍‌କାଳୀନ ନନ୍ଦିନୀ-କଂଗ୍ରେସ-ସରକାରଙ୍କ ଚକ୍ରାନ୍ତରେ ସେ ଓ ମୁଁ ବିଚାରାଳୟର ଦ୍ୱାରସ୍ଥ ହୋଇଥିଲୁ । ବିଭିନ୍ନ ସମସ୍ୟାର ବିଚାର ପାଇଁ ବହୁ ସମୟ ଧରି ତାଙ୍କ ସହ ଆଲୋଚନା ଓ ଉପଦେଶ ଗ୍ରହଣ ସମୟରେ ସେ ଅନେକ ଚମକପ୍ରଦ ଘଟଣାର ଅବତାରଣା କରୁଥିଲେ । ମୋର ଜୀବନରେ ସେ ସବୁ ଅଲିଭା ଦାଗ ହୋଇରହିବ ଏବଂ ସେ ସବୁ ପ୍ରକାଶ କଲେ କେତେ ଲୋକଙ୍କୁ ହତାଶ କରିବ ଏବଂ କେତେକଙ୍କ ମନ ଆନ୍ଦୋଳିତ ମଧ୍ୟ ହେବ । ଯାହାହେଉ ବର୍ତ୍ତମାନ ତାଙ୍କ ଜୀବନର ମହତ ଘଟଣାବଳୀ ପ୍ରକାଶ କରିବାର ସମୟ ଆସିଛି । ଏହିସବୁ ଯଦି କେହି ସଙ୍କଳନ କରେ ଭବିଷ୍ୟତ ପାଇଁ ତାହାହେବ ଏକ ଇତିହାସ । ତାଙ୍କ ସହଯୋଗୀମାନଙ୍କ ଠାରୁ ଏସବୁ ସଂଗୃହୀତ ହୋଇପାରେ । ମହାରାଜା ନିଜେ କେବେ ତାଙ୍କ ଜୀବନୀ ଲେଖୁନଥିଲେ ଏପରିକି ଦୈନନ୍ଦିନ ଘଟଣା ସବୁ ମଧ୍ୟ ଲିପିବଦ୍ଧ କରୁଥିବାର ମୁଁ ଜାଣେ ନାହିଁ । କାରଣ ଏକଦା ରାଜନୈତିକ ଗସ୍ତ ସମୟରେ ଜଣେ ବନ୍ଧୁ ମହାରାଜାଙ୍କ ପ୍ରାଇଭେଟ ସେକ୍ରେଟାରୀଙ୍କୁ କହିଲେ, ''ମହାରାଜା''ଙ୍କ ଦୈନନ୍ଦିନ ଘଟଣାବଳୀ ତମେ ସବୁ ଲିପିବଦ୍ଧ କରି ରଖୁନାହଁ କାହିଁକି ? ମୁଁ ମଧ୍ୟ ସେହି ସମୟରେ ଉକ୍ତ ଜିପ ଭିତରେ ଉପସ୍ଥିତ ଥିଲି । ମୋର ବିଶ୍ୱାସ ଏସବୁ ସଙ୍କଳିତ ହେଲେ ଭବିଷ୍ୟତ ବଂଶଧର ତଥା ରାଜନୈତିକ ଗବେଷଣା କରୁଥିବା ଲୋକଙ୍କ ପାଇଁ ହେବ କୌତୁହଳପ୍ରଦ ଘଟଣାବଳୀ । ଅନେକଙ୍କୁ ଦେବ ଉତ୍ସାହ, ଉଦ୍ଦିପନା ତଥା ପ୍ରେରଣା ।

ଯେଉଁ ବୀର ପୁଙ୍ଗବ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମରେ ଆତ୍ମବଳି ଦେଇ ଅମର ହୋଇଥିଲେ ସେମାନଙ୍କ ମଧ୍ୟରେ ଚୌହାନବଂଶ କୁଳତିଳକ ପୁଣ୍ୟ

ଶ୍ଳୋକ ବୀର ସୁରେନ୍ଦ୍ର ସାଏଙ୍କ ନାମ ଉଲ୍ଲେଖନୀୟ । ସେହି ଚୌହାନ ବଂଶର ରାଜସିଂହାସନରେ ଆସୀନ ହୋଇଥିଲେ ମହାରାଜା ରାଜେନ୍ଦ୍ର ନାରାୟଣ, ବିଖ୍ୟାତ ପାଟଣାଷ୍ଟେଟ ନାମକ ଗଡ଼ଜାତ ରାଜ୍ୟରେ । ଏହି ରାଜ୍ୟର ମହାରାଜାଙ୍କୁ ଅଠରଗଡ଼ର ମଉଡ଼ମଣି ବୋଲି କୁହାଯାଉଥିଲା ।

ବର୍ତ୍ତମାନର ସମ୍ବଲପୁର ଜିଲ୍ଲା ତତ୍‌କାଳୀନ ପାଟଣାଷ୍ଟେଟର ଅଙ୍ଗ ବିଶେଷ ଥିଲା ଏବଂ ପୁରାତନ ରାଜଧାନୀ ଥିଲା ପାଟଣାଗଡ଼ । ଅଦ୍ୟାବଧି କୋଶଳ ଓ ଚୌହାନ କୀର୍ତ୍ତିରାଜି ବିରାଜିତ ପାଟଣାଗଡ଼, ଟିଟିଲାଗଡ଼ (ତିତିଲିକା ଜନପଦ) ରାଣୀପୁର, ଝରୀଏଲ ଆଦି ସ୍ଥାନମାନଙ୍କରେ । ବହୁ ବର୍ଷ-ପରେ ବଲାଙ୍ଗୀରରେ ସ୍ଥାପିତ ହେଲା ନୂଆ ରାଜଧାନୀ । ମହାରାଜା ରାଜେନ୍ଦ୍ର ନାରାୟଣଙ୍କ ବ୍ୟବହାର ଓ ପ୍ରଜାରଞ୍ଜନ ଲୋକମାନଙ୍କ ମନରେ ଆଣିଥିଲା ବିଶ୍ୱାସ ଓ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ସେ ଥିଲେ ଲୋକପ୍ରିୟ । ତାଙ୍କ ପକ୍ଷରେ ପରାଜୟ ଥିଲା ଅଳିକ ମାତ୍ର ।

ପ୍ରଜାରଞ୍ଜକ ମହାରାଜା ଗଢ଼ିତୋଳିଥିଲେ ନିଜ ରାଜ୍ୟକୁ ଏକ ଆଧୁନିକ ଧରଣରେ । ରାଜଧାନୀ ବଲାଙ୍ଗୀର ସହରକୁ ମଧ୍ୟ ଅତ୍ୟାଧୁନିକ ସହରରେ ପରିଣତ କରିବାର ବହୁ ପ୍ରୟାସ କରିଥିଲେ ସେ । ତହିଁର ମାନବିନ୍ଦୁ ଏବେ ସୁଦ୍ଧା ରହିଛି ମୂକସାକ୍ଷୀ । ବଲାଙ୍ଗିରର ଯେ କୌଣସି ଛକରେ ଦଣ୍ଡାୟମାନ ହୋଇ ନିରୀକ୍ଷଣ କଲେ ରାସ୍ତାସବୁ ଜ୍ୟାମିତିକ ସରଳ ରେଖାପରି ଚତୁର୍ଦ୍ଦିଗକୁ ଦୃଶ୍ୟମାନ । ପ୍ରତ୍ୟେକ ଲୋକବସତି ଅଂଚଳସବୁ ବର୍ଗାକାର । ଶୁଣାଯାଏ ବିଖ୍ୟାତ ଇଞ୍ଜିନିୟରମାନଙ୍କୁ ଡକାଇ ବଲାଙ୍ଗିର ସହର ଓ ଅନ୍ୟାନ୍ୟ ଅଞ୍ଚଳ ପାଇଁ ପ୍ରସ୍ତୁତ ହୋଇଥିଲା ଏକ ଯୋଜନା । ବଲାଙ୍ଗୀରକୁ ସୌନ୍ଦର୍ଯ୍ୟଭରା ଏକ ନନ୍ଦନକାନନରେ ପରିଣତ କରିବା ଥିଲା ତାଙ୍କ ପରିକଳ୍ପନା । ରାଜେନ୍ଦ୍ର ପାର୍କ ଥିଲା ତହିଁର ଅୟମାରମ୍ଭ ମାତ୍ର । ସେତେବେଳର ଲୋକାରଣ୍ୟ ମନଲୁବ୍‌ଧକର ଚିର ବସନ୍ତଭରା ରାଜେନ୍ଦ୍ର ପାର୍କ ବର୍ତ୍ତମାନ ହୋଇଛି ଏକ ନିରସ ଓ ନିର୍ଜନସ୍ଥଳୀ । ଆଜି ପିଲାମାନେ ଖେଳୁଛନ୍ତି ସେହି ଶୁଷ୍କ ପ୍ରାନ୍ତରରେ କ୍ରିକେଟ ।

ରାଜେନ୍ଦ୍ର କଲେଜ ଆରମ୍ଭ ହୋଇଥିଲା ଏକ ମିଲେଟେରୀ ବାରେକରେ । ଏହାକୁ ବୈଦେଶିକ-ଅତ୍ୟାଧୁନିକ ଢ଼ାଂଚାରେ ଗଢ଼ି ତୋଳିବାର ଥିଲା ଏକ ପ୍ରଚେଷ୍ଟା । ବୈଦେଶିକ

ଇଞ୍ଜିନିୟରମାନେ କରିଥିଲେ ଯୋଜନା । କଲେଜ ହୋଇଥାନ୍ତା ମନୋହରପୁରରେ ବୃତ୍ତାକାରରେ । ତହିଁରେ ଚତୁର୍ଦ୍ଦିଗରେ ନିର୍ମିତ ହୋଇଥାନ୍ତା ରାସ୍ତା ଓ ବାସସ୍ଥଳୀ ବୃତ୍ତାକାରରେ । କଲେଜ ଗୃହ ଓ ଛାତ୍ରାବାସସ୍ଥଳୀର ମଧ୍ୟରେ ହୋଇଥାନ୍ତା ବିଭିନ୍ନ ପ୍ରକାରର ପୁଷ୍ପ ଉଦ୍ୟାନ ଓ ସବୁଜ ତୃଣଭୂମି । ଛାତ୍ରାବାସର ଚତୁର୍ଦ୍ଦିଗରେ ରହିଥାନ୍ତା ଗୁରୁନିବାସଚୟ । ଉଭୟଙ୍କ ମଧ୍ୟରେ ଅବସ୍ଥାପିତ ହୋଇଥାନ୍ତା ଖେଳ ଉଦ୍ୟାନ, ସନ୍ତରଣସ୍ଥଳୀ ଇତ୍ୟାଦି । ମଧ୍ୟରେ ରହିଥାନ୍ତା କଲେଜ ହଲ, ଭରା ହୋଇଥାନ୍ତା କୋଶଳ କଳାକୃଷ୍ଟିରେ ।

ତାଙ୍କ ରାଜ୍ୟ-ଶାସନ ସମୟରେ ବଲାଙ୍ଗିରରେ ପ୍ରତିଷ୍ଠିତ ବିଭିନ୍ନ ପ୍ରକାରର ଚିକିତ୍ସାସ୍ଥଳୀ, ଚକ୍ଷୁରୋଗ, ରଞ୍ଜନରଶ୍ମୀ, ପ୍ରସୂତୀଭବନ, ରକ୍ତାଦି ପରୀକ୍ଷାଗାର, ଗୋ-ଚିକିତ୍ସାଳୟ, ସର୍ବାଧୁନିକ ଦୁଗ୍‌ଧ ବଣ୍ଟନ (Sealed Bottle) ପାଇଁ ଗୋଶାଳା (ଡାଇରୀ ଫାର୍ମ) ଚାଷୀମାନଙ୍କୁ ଗୋ-ମେଷାଦି ଉନ୍ନତ ପଶୁ ବଣ୍ଟନ, ଭ୍ରାମ୍ୟମାଣ ଚିକିତ୍ସାଳୟ ଏବେ ସୁଦ୍ଧା ରହିଛି । ଶାସନର ମାନବିନ୍ଦୁ ପରି ଭାରତ ସ୍ୱାଧୀନତାର ୩୦ ବର୍ଷ ପୂର୍ବରୁ ଏହା ହେଉଛି ମୂକସାକ୍ଷୀ । ହରିଶଙ୍କରକୁ ସ୍ୱାସ୍ଥ୍ୟନିବାସ କରିବାର ପରିକଳ୍ପନା ଏବଂ ଗ୍ରୀଷ୍ମକାଳୀନ ରାଜଧାନୀର ନିର୍ମାଣ ଯୋଜନା ଆରମ୍ଭ ହୋଇଥିଲା ମାତ୍ର ।

ସ୍ୱର୍ଗତ ମହାରାଜାଙ୍କ ଶାସନ ସମୟରେ ପଞ୍ଚାୟତରାଜ ପ୍ରତିଷ୍ଠା, ନିର୍ବାଚିତ ବିଧାନସଭା, ସର୍ବୋଚ୍ଚ ବିଚାରାଳୟ ପ୍ରତିଷ୍ଠା, ମନ୍ତ୍ରୀମଣ୍ଡଳ ଗଠନ ସହ ବିଭାଗ ବଣ୍ଟନ ଓ ବିଲାତି ଢାଞ୍ଚାରେ ପାର୍ଲିଆମେଣ୍ଟରୀ ଶାସନ ପଦ୍ଧତି ପ୍ରବର୍ତ୍ତିତ ହୋଇଥିଲା । ବଲାଙ୍ଗୀର (ପୂର୍ବତନ ପାଟଣାଷ୍ଟେଟ)ର ଶାସନ ଯେକୌଣସି ମୋଗଲବନ୍ଦୀ ଶାସନରୁ ଉଚ୍ଚତର ଥିଲା ବୋଲି ତତ୍‌କାଳୀନ ପୈର୍ବତନ ଗଡ଼ଜାତର ମୁଖ୍ୟ ଶ୍ରୀଯୁକ୍ତ ନୀଳମଣି ସେନାପତି ଆଇ.ସି.ଏସ. ତାଙ୍କ ମତ ପ୍ରକାଶ କରିଛନ୍ତି । "ମହାରାଜା" ପୁସ୍ତକ ପ୍ରଣେତା ଜରମାନୀ ଦାସ ବିଭିନ୍ନ ମହାରାଜାମାନଙ୍କର କୁତ୍ସିତ ଚିତ୍ର ଅଙ୍କନ କରିଥିଲେ ମଧ୍ୟ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଭୂୟସୀ ପ୍ରଶଂସା କରିଛନ୍ତି । ଭି.ପି. ମେନନ ମଧ୍ୟ ରାଜାମାନଙ୍କ ଗଡ଼ଜାତ ମିଶ୍ରଣ ପୁସ୍ତକରେ ଦେଶ ମିଶ୍ରଣ ଚୁକ୍ତିରେ ମହାରାଜା ରାଜେନ୍ଦ୍ର ନାରାୟଣ ପ୍ରଥମ ବ୍ୟକ୍ତି ଦସ୍ତଖତ କରିଥିବାର ଉଲ୍ଲେଖ କରିଛନ୍ତି ।

ସ୍ୱର୍ଗତ ମହାରାଜା ଗଡ଼ଜାତ ମିଶ୍ରଣପରେ ଲୋକଙ୍କୁ ମିଳିଥିବା ସ୍ୱାଧୀନତାର ରକ୍ଷଣାବେକ୍ଷଣ ତଥା ବ୍ୟକ୍ତି ସ୍ୱାଧୀନତାର ସୁରକ୍ଷା ପାଇଁ "ଗଣତନ୍ତ୍ର ପରିଷଦ" ନାମକ ଏକ ଦଳ ଗଠନ କରିଥିଲେ । ଓଡ଼ିଶାର ପାର୍ବତ୍ୟ ଅଞ୍ଚଳ ତଥା ଅନୁନ୍ନତ ଅଞ୍ଚଳର ବିକାଶ ପାଇଁ ରାଜନୀତିରେ ପ୍ରବେଶ କରି ସବୁବେଳେ ନିର୍ବାଚନ ଲଢ଼େଇରେ ଅବତୀର୍ଣ୍ଣ ହେଉଥିଲେ ଏବଂ ବଞ୍ଚିଥିବା ପର୍ଯ୍ୟନ୍ତ ଓଡ଼ିଶାର ରାଜନୀତିକୁ ନିୟନ୍ତ୍ରଣ କରୁଥିଲେ । ବର୍ତ୍ତମାନ ଅନୁନ୍ନତ ଅଂଚଳର ବିକାଶ ପାଇଁ ଏ ଅଂଚଳର ଲୋକଙ୍କ ମନରେ ଜାଗରଣ ଆସିଛି ଏକଥା ବହୁ ଆଗରୁ ସ୍ୱର୍ଗତ ମହାରାଜା ଚିନ୍ତାକରି ତାଙ୍କର ସମସ୍ତ ସମୟକୁ ସେ ଦିଗରେ ଉତ୍ସର୍ଗ କରିଥିଲେ । ୧୯୫୦ ସାଲରେ 'ଗଣତନ୍ତ୍ର ପରିଷଦ'ର ସୁନ୍ଦରଗଡ଼ ଜିଲ୍ଲା ରାଜଗାଙ୍ଗପୁର ଅଧିବେଶନରେ ଗୃହୀତ ପ୍ରସ୍ତାବାବଳୀରୁ ତାଙ୍କର ଦୂରଦର୍ଶିତାର ପରିଚୟ ମିଳେ । 'ଗଣତନ୍ତ୍ର ପରିଷଦ'ର ଗଣତାନ୍ତ୍ରିକ ନୀତି ୨ୟ ଅଧ୍ୟାୟ ୭ମ ପୃଷ୍ଠାରେ ମହାରାଜା ରାଜେନ୍ଦ୍ରଙ୍କ ବକ୍ତବ୍ୟ ଉଲ୍ଲେଖ ଅଛି ।

"But the most important of all problems is the establishment & preservation of Democracy & libertry of the Individual without which independence is meaningless"

ଭାରତ ସ୍ୱାଧୀନତାର ୨୮ ବର୍ଷ ପରେ ୧୯୭୫ରେ ବ୍ୟକ୍ତି ସ୍ୱାଧୀନତାକୁ ଲୋପକରି ଜରୁରୀ ପରିସ୍ଥିତି ଜାରୀ ହୋଇଥିଲା ଓ ଭାରତର ସ୍ୱାଧୀନତା ବିପନ୍ନ ହୋଇ ସାରା ଦେଶ ଏକ କାରାଗାରରେ ପରିଣତ ହୋଇଥିଲା । ସେତେବେଳେ ଦେଶର ସ୍ୱାଧୀନତା ତଥା ବ୍ୟକ୍ତି ସ୍ୱାଧୀନତା ରକ୍ଷା ପାଇଁ ପୁଣ୍ୟଶ୍ଳୋକ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଭାରତର ସର୍ବତ୍ର ବିପ୍ଳବର ବହ୍ନି ପ୍ରଜ୍ଜ୍ୱଳିତ ହୋଇଥିଲା । ଏହା ହେଲା ଭାରତର ଅନ୍ୟ ଏକ ସ୍ୱାଧୀନତା ସଂଗ୍ରାମ । ବହୁଲୋକ କାରାବରଣ କଲେ ! ଅନେକ ଲୋକ କାରାଗାରରେ ମୃତ୍ୟୁବରଣ କଲେ । ଶେଷରେ ଭାରତର ସ୍ୱାଧୀନତା ତଥା ବ୍ୟକ୍ତି ସ୍ୱାଧୀନତା ପ୍ରତିଷ୍ଠିତ ହେଲା । ଏକଥା ବହୁ ଆଗରୁ ଚିନ୍ତା କରିଥିବାର ଉପରୋକ୍ତ ଉକ୍ତିରୁ ପ୍ରମାଣ ମିଳେ । ବୃହତ୍ତର ଓଡ଼ିଶା ଗଠନ ପାଇଁ ଅତୀତରେ ହୋଇଥିବା ସୀମା ଆନ୍ଦୋଳନରେ ମଧ୍ୟ ସେ କାରାବରଣ କରିଥିଲେ । ସେ ବଂଚିଥିଲେ

ବ୍ୟକ୍ତି ସ୍ୱାଧୀନତା ତଥା ଦେଶବାସୀଙ୍କୁ କରାଗାରରୁ ମୁକ୍ତ କରିବା ପାଇଁ ୧୯୭୫ ରେ ମଧ୍ୟ ପୁଣି କାରାବରଣ କରିଥାନ୍ତେ ।

ଆଜି ଦେଶରେ ଅସ୍ପୃଶ୍ୟତା ନିବାରଣ ପାଇଁ ଯେଉଁ ସଂଘର୍ଷ ଚାଲିଛି ମହାରାଜା ତାଙ୍କ ରାଜ୍ୟ ଶାସନ କାଳରେ ଭାରତ ସ୍ୱାଧୀନତାର ବହୁ ପୂର୍ବରୁ ଏହାର ଏକ ସମାଧାନ କରିଥିଲେ । ହରିଜନମାନଙ୍କୁ ଆର୍ଯ୍ୟ ସମାଜ ଦ୍ୱାରା ସଂଗଠିତ କରାଇ ତାଙ୍କୁ ମନ୍ଦିର ପ୍ରବେଶର ଅଧିକାର ପ୍ରଦାନ କରିଥିଲେ । ହରିଜନମାନଙ୍କର ଉନ୍ନତି ବିଧାନ ପାଇଁ ଧର୍ମାନ୍ତର ଗ୍ରହଣ ନକରିବାକୁ ଷ୍ଟେଟର ଖର୍ଚ୍ଚରେ କଲିକତାସ୍ଥିତ ହିନ୍ଦୁ ମିଶନରେ ଷ୍ଟେଟର ଜଣେ ହରିଜନ ଯୁବକଙ୍କୁ ଟ୍ରେନିଂ ଦେଇ ଏ ଦିଗରେ କାର୍ଯ୍ୟ କରିବାକୁ ତାଙ୍କୁ ନିଯୁକ୍ତି ପ୍ରଦାନ କରିଥିଲେ । ସ୍ଥାନେ ସ୍ଥାନେ ହରିଜନମାନଙ୍କ ପାଇଁ ଭଜନ ମଣ୍ଡପମାନ ମଧ୍ୟ ନିର୍ମାଣ କରାଇଥିଲେ । ମୁଁ ବଲାଙ୍ଗିର କଲେଜରେ ପଢୁଥିଲାବେଳେ ଜଣେ ହରିଜନ ଛାତ୍ରଙ୍କୁ ଧର୍ମାନ୍ତର କରିବାକୁ ଉଦ୍ୟମ ହେଉଥିବାବେଳେ ଉକ୍ତ ଟ୍ରେନିଂ ପ୍ରାପ୍ତ ଯୁବକ ତାଙ୍କୁ ଧର୍ମାନ୍ତରରୁ ନିବର୍ତ୍ତାଇ ତାଙ୍କର ସବୁ ସୁବିଧା କରାଇଦେବା ପାଇଁ ପ୍ରତିଶ୍ରୁତି ଦେଇ କାର୍ଯ୍ୟ କରିଥିଲେ । ଏହି ଯୁବକ ପରେ ଓଡ଼ିଶା ସରକାରଙ୍କ ଅଫିସର ଭାବେ କାର୍ଯ୍ୟ କରିଥିଲେ । ତାଙ୍କ ମନ୍ତ୍ରୀତ୍ୱ ସମୟରେ ଧର୍ମାନ୍ତର ଗ୍ରହଣ ବିରୁଦ୍ଧରେ ଏକ ଆଇନ ପ୍ରଣୟନ କରିଥିଲେ । କିଛି ବର୍ଷ ପରେ ଅରୁଣାଚଳ ପ୍ରଦେଶ ମଧ୍ୟ ଏପରି ଏକ ଆଇନ କରିଥିବାର ଜଣାପଡ଼େ । ପଶ୍ଚିମ ଓଡ଼ିଶା ପାଇଁ ''ନୂଆ ଖାଇ'' ଏକ ବଡ଼ ପର୍ବ । ଆମେ ସବୁ ଓଡ଼ିଶା ବିଧାନସଭାରେ ଥିଲାବେଳେ କେବେ କେବେ ନୂଆଖାଇ ହେଉଥିଲା । ସେତେବେଳେ ଯେଉଁମାନେ ଘରକୁ ଯାଉନଥିଲେ ମହାରାଜା ସେମାନଙ୍କୁ ନିମନ୍ତ୍ରଣ କରି 'ନୂଆଖାଇ' ପାଳନ କରି, ଏକାଠି ବସି ଭୋଜନ କରୁଥିଲେ । ଏପରିକି ହରିଜନ ସମାବେଶରେ ଏକାସାଙ୍ଗରେ ବସି ଭୋଜନ କରିଥିବାର ମୁଁ ଦେଖିଛି ।

ଥରେ ମହାରାଜାଙ୍କ ଗସ୍ତ ସମୟରେ ସୁଦୂର ପଲ୍ଲୀ ଅଞ୍ଚଳର ନିଭୃତ କୋଣରେ ମହାରାଜା ଅବସ୍ଥାନ କରୁଥାନ୍ତି ଏକ ହରିଜନ ଗୃହରେ । ମୋର ଏବେ ବି ସେ କଥା ମନେ ଅଛି, ତାଙ୍କର ବ୍ରାହ୍ମଣ ପୂଜାରୀ ସେଠାରେ ଅବସ୍ଥାନ କରୁଥିବା ପର୍ଯ୍ୟନ୍ତ ସେ ଅନ୍ନ ଜଳ ସ୍ପର୍ଶ କରିନଥିଲେ । ସେଦିନ ଥିଲା ମାର୍ଗଶୀର ମାସ ଗୁରୁବାର । ପରେ ତାଙ୍କୁ କଥା ପ୍ରସଙ୍ଗରେ ଏକଥା ପଚାରିବାରୁ ତାଙ୍କର ଜଣେ ସହକର୍ମୀ । ଶ୍ରୀ ସୁନାଧର ପାଇଁ ଏହା ସମ୍ଭବ ହେଲା ବୋଲି କହି ଅଳ୍ପ ହସି ଦେଇଥିଲେ ସେ । ଏହା କେବଳ ମହତ୍‌ଗୁଣର ପରିଚୟ ପ୍ରଦାନ କରେ ।

ସେତେବେଳର ଆଉ ଏକ ଘଟଣା ସମସ୍ତଙ୍କ ମନକୁ ଆନ୍ଦୋଳିତ କରିଥିଲା । ଏପରିକି ତାଙ୍କ ରାଜନୈତିକ ବିରୋଧୀ ଶକ୍ତିମାନଙ୍କୁ ମଧ୍ୟ ସ୍ତମ୍ଭୀଭୂତ କରିଥିଲା ଏବଂ ସେମାନେ ମୁକ୍ତ କଣ୍ଠରେ ମହାରାଜାଙ୍କ ଏ ମହତ୍ ଗୁଣକୁ ସ୍ୱୀକାର କରିଥିଲେ ଏବଂ ମହାରାଜା ସାଧାରଣ ମନୁଷ୍ୟ ଠାରୁ ବହୁ ଉଚ୍ଚରେ ବୋଲି ମତବ୍ୟକ୍ତ କରୁଥିଲେ । ବେଳେବେଳେ କେହି କେହି ତାଙ୍କୁ ରାଜାମାନେ ବିଷ୍ଣୁ ଅଂଶରେ ଜନ୍ମ ଗ୍ରହଣ କରିଥାନ୍ତି ବୋଲି କହିଲେ ସେ କାହିଁ ତାହା ଅନୁଭବ କରିପାରୁ ନାହାଁନ୍ତି ବୋଲି କହି ହସରେ ଉଡ଼ାଇ ଦେଉଥିଲେ । ମହାରାଜାଙ୍କ ନିର୍ବାଚନ ଗସ୍ତ ଚାଲିଥାଏ । ନିର୍ବାଚନ ପାଇଁ ବାତାବରଣ ସରଗରମ ଥାଏ । ମହାରାଜାଙ୍କ ଲୋକପ୍ରିୟତାରେ ବିରୋଧୀପକ୍ଷ କ୍ଷୁନ୍ନ ହୋଇ ସ୍ଥାନେ ସ୍ଥାନେ ଗଣ୍ଡଗୋଳ ହିଂସା ଆଦିର ସୂତ୍ରପାତ କରୁଥାନ୍ତି । ସେତେବେଳେ ମୁଁ 'ବେଲପଡ଼ା ସଇଁତ୍ରଳା' ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦିତା କରୁଥାଏ । ମହାରାଜାଙ୍କ ରାତ୍ରରହଣି ନିର୍ଦ୍ଧାରିତ ହୋଇଥାଏ ବେଲପଡ଼ାର ରେଭିନ୍ୟୁ ଡାକବଙ୍ଗଳାରେ, କିନ୍ତୁ ତାଙ୍କୁ ରହିବା ପାଇଁ ସ୍ଥାନ ମିଳିଲା ନାହିଁ କାରଣ ମହାରାଜା ଥାନ୍ତି ବିରୁଦ୍ଧଦଳରେ । କଂଗ୍ରେସ କୁଶାସନ ବିରୁଦ୍ଧରେ ଚାଲିଥାଏ ଅବିରତ ସଂଗ୍ରାମ । କଂଗ୍ରେସ ସରକାରରେ ଥାଇ ଲୋକଙ୍କୁ ଏପରି ଭୟଭୀତ କରାଇଥାଏ କି ଲୋକେ ମହାରାଜାଙ୍କୁ ତାଙ୍କ ଘରେ ଆଶ୍ରୟ ଦେବା ପାଇଁ ମଧ୍ୟ ସାହସ କରୁନଥାନ୍ତି । ଯାହାହେଉ ଶେଷରେ ଆମର ଜଣେ କର୍ମୀ ମହାରାଜାଙ୍କୁ ଆଶ୍ରୟ ଦେବା ପାଇଁ ବାନ୍ଧିଲେ ସାହାସ ଏବଂ ତାଙ୍କର ବାସଗୃହର ଏକ କୋଠରୀ ଦେବା ପାଇଁ ହେଲେ ବଦ୍ଧପରିକର । ମହାରାଜା ସନ୍ଧ୍ୟାରେ ଆସି ପହଞ୍ଚିଲେ । ସେତେବେଳେ ଆମର ଓ ବିରୁଦ୍ଧଦଳର ଲୋକମାନଙ୍କ ମଧ୍ୟରେ ସଂଘର୍ଷ ଆରମ୍ଭ ହୋଇ ବାତାବରଣ (ବେଲପଡ଼ାରେ) ଜଟିଳ ଆକାର ଧାରଣ କରିଥାଏ । ଖରା ମାସ, ଭୀଷଣ ଗରମ ମହାରାଜାଙ୍କ ରାତ୍ରରହଣି ଆରମ୍ଭ ହୋଇଥାଏ । ତାଙ୍କର କ୍ଳାନ୍ତିର ଅବସାନ ପରେ ବିଶ୍ରାମ ପାଇଁ ମହାରାଜା କହିଲେ ଘର ବାହାରେ ତାଙ୍କର ଶଯ୍ୟା ଠିକ୍ କରିବା ପାଇଁ । ପି.ଡବ୍ଲ୍ୟୁଡି. ରାସ୍ତାର ଅଳ୍ପ ବ୍ୟବଧାନରେ ଆଶ୍ରୟଦାତାଙ୍କ ଘର । ଯାନବାହାନ ଯାତାୟତ କରି ରାସ୍ତାକୁ ମୁଖରୀତ କରୁଛି ଘୋର ଘର୍ଘର ନାଦରେ । ରାସ୍ତାକୁ ଅଳ୍ପ ଛାଡ଼ି ମହାରାଜାଙ୍କ ବିଛଣା ବ୍ୟବସ୍ଥା କରାଯାଇଛି । ଦୂରରୁ

ମଶାରୀ ଘେର ଆବରୀ ରହିଛି ଶଯ୍ୟାକୁ । ଭିତରେ ମହରାଜା ନିଘୋଡ଼ ନିଦରେ ଶୋଇଛନ୍ତି । ଆମ ସମସ୍ତଙ୍କ ମନରେ ଉଦ୍‌ବେଗ । ତାଙ୍କର ଅଦୂରରେ ଆମେ ଏସବୁ ଶୋଇଛୁ କିନ୍ତୁ ନିଦ ଆସୁଛି କୁଆଡ଼େ ?

ଏ ଘଟଣା ଦେଖି ଲୋକେ ହେଲେ ଆଶ୍ଚର୍ଯ୍ୟ । ରାଜପ୍ରସାଦ ତ୍ୟାଗ କରି ମହାରାଜ ଶୟନ କରିଛନ୍ତି ଧୂଳି ଧୂସରିତ ରାସ୍ତାକଡ଼ରେ, ଜୀବନକୁ ବିପନ୍ନ କରି, ମୁକ୍ତ ଆକାଶ ତଳେ । ଦୁର୍ବୃତ୍ତମାନଙ୍କ ଦୃଷ୍ଟି ମହାରାଜାଙ୍କ ଉପରେ । ଯା ପରେ ହେଲା ଗାଁରେ ବିଚାର । ଅର୍ଦ୍ଧ ରାତ୍ରରେ ମହାରାଜାଙ୍କ ଅଦୃଶ୍ୟରେ ଅନତୀଦୂରରେ ଲୋକେ ସ୍ୱଇଚ୍ଛାରେ ରହିଲେ ପ୍ରହରୀ । ସାରା ଗାଁ ଉଜାଗର । କଂଗ୍ରେସର ମନ୍ତ୍ରୀମାନେ ଦୁଗ୍ଧଫେନନିଭ ଶର୍ଯ୍ୟାରେ ଡାକବଙ୍ଗଳାରେ ଶୟନରେ ବ୍ୟସ୍ତ । ଏହାପରେ ହେଲା ନିର୍ବାଚନ ଭୋଟ ଗ୍ରହଣ । ଆମେ ହେଲୁ ବିଜୟୀ ସର୍ବାଧିକ ଭୋଟରେ । ସେଠାରେ କଂଗ୍ରେସର ହେଲା ସଂପୂର୍ଣ୍ଣ ପରାଜୟ । ଏବେ ମଧ୍ୟ ସେ କଥା ସ୍ମରଣ କଲେ ଦେହରେ ଜାଗେ ଶୀହରଣ । ମହାରାଜା ତାଙ୍କର ଉତ୍କଟ ଶତ୍ରୁମାନଙ୍କୁ ମଧ୍ୟ ଭୟ କରୁନଥିଲେ । ନିଜକୁ ଭଗବାନଙ୍କ ଠାରେ ସମର୍ପଣ କରିଥିଲେ । ପଚାରିଲେ କହୁଥିଲେ ଉପରବାଲା ଯାହା କରିବ । ତେତେକ ଦିନ ପରେ ଏହି ଗୁଣ୍ଡାମାନଙ୍କ କଥା ପଚାରିବାରୁ ସେ କହିଲେ, **By Nature goondas are inverted Cowards.**

ମନେପଡ଼େ ଆଜି ସେ ମହାପୁରୁଷଙ୍କ ଅତୀତ । ଜୀବନରେ ଆଣିଦିଏ ଏକ ସାହସ ଓ ଉଦ୍ଦୀପନା । ଘୋର ନୈରାଶ୍ୟ ଅନ୍ଧକାରରେ ମୋ ଭଳି ପଥଭ୍ରାନ୍ତ ପଥିକକୁ ଦିଏ ଚିରନ୍ତନ ଆଲୋକ । ଏହା ହିଁ ମୋର ପରମ ସୌଭାଗ୍ୟ ।

ଆଉ ଏକ ମର୍ମସ୍ପର୍ଶୀ ଘଟଣାର ଅବତାରଣା ନକରି ରହିପାରୁ ନାହିଁ । ମହାରାଜା ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଶର୍ଯ୍ୟାଶାୟୀ ଥିଲେ । ବମ୍ବେସ୍ଥିତ କର୍କଟ ରୋଗ ଚିକିତ୍ସାଳୟରେ ତାଙ୍କ ଜୀବନର ଦୀପ ଲିଭି ଲିଭି ଆସୁଥାଏ । ଏକଥା ସେ ଜାଣିଥିଲେ ମଧ୍ୟ ଅନ୍ୟକୁ କହୁ ନଥିଲେ କେବଳ ଇଙ୍ଗିତ ଦେଉଥିଲେ । ମୁଁ ପରେ ଖବର ସଂଗ୍ରହ କରି ଜାଣିଲି ଯେ ସେ ନିର୍ଦ୍ଦେଶ ଦେଇଥିଲେ ତାଙ୍କୁ ଯେଉଁଠି ଯାହା ହେଲେ ମଧ୍ୟ ତାଙ୍କୁ ତାଙ୍କର ମାତୃଭୂମି ଓଡ଼ିଶାକୁ ନିଶ୍ଚୟ ନେବେ । ତାଙ୍କୁ ବଂଚାଇବାକୁ ଅଦମ୍ୟ ଚେଷ୍ଟା ଚାଲିଥାଏ ।

ରାଜ ପରିବାରରେ ରାଜା ହୋଇ ଯେ ଜନ୍ମଗ୍ରହଣ କଲା ସେ ଦୁଃଖୀ । କାରଣ ଜଣେ ରାଜା ମଲେ ଆଉ ଜଣେ ଅପେକ୍ଷା କରିଛି ରାଜା ହେବା ପାଇଁ । ଜଣଙ୍କର ମୃତ୍ୟୁରେ ଆଉ ଜଣେ ହେବ ଗାଦିନାସୀନ । ଏକପକ୍ଷେ ମୁଣ୍ଡପଟା କାନ୍ଦବୋବାଳି, ଅନ୍ୟପକ୍ଷେ ଘଣ୍ଟ ଶଙ୍ଖ ହୁଳହୁଳି । ଏ ହେଲା ପରମ୍ପରା । ବିଭୀଷଣ ମଧ ଏ ନିୟମ କରିଥିଲା, ସତ୍ୟ ଲଙ୍ଘନ କଲେ ସେ କଳିଯୁଗରେ ରାଜା ହେବ ବୋଲି । ମହାରାଜା ରାମଚନ୍ଦ୍ର ବିଭୀଷଣର ଏ ହଲପ ଶୁଣି ହେଲେ ଆଶ୍ଚର୍ଯ୍ୟ ଓ ତାକୁ କରିଥିଲେ ଆଲିଙ୍ଗନ ।

ଯାହା ହେଉ ମହାରାଜା ତାଙ୍କ ମୃତ୍ୟୁର ଖୁବ୍ ଅବ୍ୟବହିତ ପୂର୍ବରୁ ଦିନେ ତାଙ୍କର ସାନ ପୁଅ ଶ୍ରୀ ଅନଙ୍ଗ ଉଦୟ ସିଂଦେଓଙ୍କୁ ଡ଼ାକି ପଚାରିଲେ ପୃଥିବୀରେ ସବୁଠୁ ଆଶ୍ଚର୍ଯ୍ୟ କଥା କ'ଣ ? ସେ ଉତ୍ତର ଦେଇ ପାରିଲେ ନାହିଁ । ତାଙ୍କ ମୁହଁକୁ ଚାହିଁଲେ । ଶେଷରେ ମହାରାଜା ଉତ୍ତର ଦେଇ କହିଲେ - **Man is Mortal. But he thinks that he is immortal** ମନୁଷ୍ୟ ମରଣଶୀଳ କିନ୍ତୁ ସେ ଭାବେ ଯେ, ସେ ଅମର, ଏହା ହିଁ ସେହି ମହାନ୍ ଆତ୍ମାର ଶେଷ ବାଣୀ । ଆଜି ସେହି ମହାପୁରୁଷ ଓ ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଅନ୍ତିମ ଜୀବନ ଚିନ୍ତା କଲେ ଆଖିରେ ଆସେ ଅବାରିତ ଅଶ୍ରୁ ଓ କଣ୍ଠ ହୁଏ ବାଷ୍ପରୁଦ୍ଧ । ତାଙ୍କ ଅମର ବାଣୀ ଓ କାର୍ଯ୍ୟାବଳୀ ଅନ୍ଧକାରରେ ହୁଏ ଆଲୋକ ବର୍ତ୍ତିକା । ସମାଜର ଦୁର୍ବଳକୁ ଦିଏ ସାହସ, ଶାସକ ହୁଏ ସଂଯତ ଏବଂ ଇତିହାସ କହେ ସେ ଏକ "ମହାନ୍ ମହାରାଜା' ।



# ମହାନୁଭବ ମହାରାଜା

ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହ ଦେଓ ବିରୁଦ୍ଧ ଦଳର ନେତା, ଉପମୁଖ୍ୟମନ୍ତ୍ରୀ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଥିଲାବେଳେ ଉଚ୍ଚ ପରମ୍ପରା ରକ୍ଷା ବିଭିନ୍ନ ସମୟରେ ଓଡ଼ିଶା ବିଧାନସଭା ବିବରଣୀରେ ଲିପିବଦ୍ଧ ହୋଇରହିଛି । ଇତିହାସକୁ ଆଖିଆଗରେ ରଖି ସଂଯମ ରକ୍ଷା କଲେ ଯାଇ ଭବିଷ୍ୟତରେ ଗଣତନ୍ତ୍ର ଏ ଦେଶରେ ତିଷ୍ଠି ରହିବ ନହେଲେ ଏଥିରେ ଗଣତନ୍ତ୍ର ଉପରୁ ଲୋକଙ୍କ ବିଶ୍ୱାସ ତୁଟିଯିବ ବୋଲି ତାଙ୍କ ଦୃଢ଼ ମତ ଅଗାଧ ବିଶ୍ୱାସ ଥିଲା । ଆଜି ଦିନରେ ତାଙ୍କ କଥା ଇତିହାସ ହୋଇ ରହିଛି ଓ ଚିରଦିନ ସେ ଅମର ହୋଇରହିବେ ।

ପ୍ରାୟ ଚାଳିଶ ବର୍ଷ ତଳର କଥା । ପାଟଣା ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ (ଏମ୍.ପି.) ଓ କଳାହାଣ୍ଡି ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓ (ଏମ୍.ଏଲ୍.ଏ) ଉଭୟେ ଓଡ଼ିଶା ବିଚ୍ଛିନ୍ନାଞ୍ଚଳ ଦେଶ ମିଶ୍ରଣ ଆନ୍ଦୋଳନରେ ଝାସ ଦେଇ ମହାରାଜା ପାଟଣା କଟକ ଜେଲ୍‌ରେ ଅଟକିଥାନ୍ତି ଏବଂ ବିହାର ଗୁଣ୍ଡାମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ କଳାହାଣ୍ଡି ମହାରାଜାଙ୍କ ହାତ ଭାଙ୍ଗି ମୁଣ୍ଡରେ ଆଘାତରେ ଶର୍ଯ୍ୟାଶାୟୀ ହୋଇଥାନ୍ତି । କିଛି ଦିନ ପରେ ସମସ୍ତ ଆନ୍ଦୋଳନ ପ୍ରଶମିତ ହେଲାପରେ ମହାରାଜା ପାଟଣା ଯେତେବେଳେ ବଲାଙ୍ଗିରକୁ ଫେରିଲେ ସେତେବେଳେ ମୁଁ ଗଣତନ୍ତ୍ର ପରିଷଦରେ ଯୋଗଦାନ କରିସାରିଥିଲି । ଇତିହାସ ପ୍ରସିଦ୍ଧ ପାଟଣାଗଡ଼ରେ ତାଙ୍କର ସମ୍ବର୍ଦ୍ଧନା ପାଇଁ ଆୟୋଜନ ଚାଲିଥାଏ । ନିର୍ଦ୍ଧାରିତ ଦିବସରେ ତାଙ୍କର ଆଗମନ ପାଇଁ ବିପୁଳ ଜନସମାଗମ ହୋଇଥାଏ ସେତେବଳେ ମୁଷ୍ଟିମେୟ କେତେକ ଭଡ଼ାଟିଆ କଂଗ୍ରେସ ଗୁଣ୍ଡା ଲୋକ ତାଙ୍କୁ କଳ ପତାକା ଦେଖାଇବା ପାଇଁ ଆୟୋଜନ କରିଥାନ୍ତି । ବିରାଟ ଶୋଭାଯାତ୍ରା ପଟୁଆ ଅଗଣିତ ନରନାରୀ ତାଙ୍କୁ ନେଇ ପାଟଣାଗଡ଼ ଗଡ଼ ଭିତରେ ସଭାସ୍ଥଳରେ ପହଂଚାଇଲେ ସେଠାରେ ସଭାରେ ମହାରାଜାଙ୍କ ଭାଷଣ ଶୁଣି ମୁଁ ସ୍ତମ୍ଭୀଭୂତ ହୋଇଗଲି । ଲୋକେ ଯେତେବେଳେ ଅତ୍ୟନ୍ତ ଉଦ୍‌କ୍ଷିପ୍ତ । ଉତ୍ୟକ୍ତ ଜନତାକୁ ଶାନ୍ତ କରିବାକୁ ତାଙ୍କ ଭାଷଣରେ ମହାରାଜା କହିଲେ କଳା ପତାକା ଦେଖି ଉତ୍ୟକ୍ତ ହେବାର କୌଣସି କାରଣ ନାହିଁ

କଳା ପତାକା ଦେଖିଲେ ଆଖି ବନ୍ଦ କରିଦେଲେ କିମ୍ବା ଧୂଳି ପୋପାଡ଼ିଲେ କପଡ଼ା ସଫା କରିଦେଲେ ତ ଯିବ, ଏଥିପାଇଁ ବିବ୍ରତ ହେବାର କୌଣସି କାରଣ ନାହିଁ । ଆଶ୍ଚର୍ଯ୍ୟର କଥା ସମୁଦ୍ର ପରି ଜନତା ଚାହିଁଥିଲେ କଳାପତାକାଧାରୀମାନଙ୍କର ସତ୍ତା ମିଳିନଥାନ୍ତା । କିନ୍ତୁ ତାଙ୍କର ମୃଦୁହାସ ବକ୍ତୃତାରେ ସମସ୍ତଙ୍କ ରାଗ ପ୍ରଶମିତ ହୋଇଯାଇଥିଲା ଓ ସଭାକାର୍ଯ୍ୟ ଶାନ୍ତ ପରିବେଶରେ ସଂପୂର୍ଣ୍ଣ ହୋଇଥିଲା ।

ବିରୁଦ୍ଧ ଦଳର ନେତା ଓ କେତେକ ଉଦାହରଣ - ଆମେ ସମସ୍ତେ ମହାରାଜା ପାଟଣାଙ୍କ ଗହଣରେ ୧୯୫୭ ସାଲରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥାଉ । ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓଡ଼ିଶା ବିଧାନସଭାରେ ଗଣତନ୍ତ୍ର ପରିଷଦର ବିରୁଦ୍ଧ ଦଳର ନେତା ହୋଇ ସର୍ବସମ୍ମତକ୍ରମେ ନିର୍ବାଚିତ ହୋଇଥାନ୍ତି । ସେତେବେଳେ ଓଡ଼ିଶା ବିଧାନସଭାରେ କୌଣସି ଦଳ ଏକାକୀ ସଂଖ୍ୟା ଗରିଷ୍ଠତା ହାସଲ କରିନଥାନ୍ତି । କଂଗ୍ରେସ ୫୬ ଓ ଗଣତନ୍ତ୍ର ପରିଷଦ ୫୧ ଟି ସ୍ଥାନରେ ବିଜୟୀ ହୋଇ ବିଧାନ ସଭାକୁ ନିର୍ବାଚିତ ହୋଇଥାନ୍ତି । ସରକାର ଗଠନ ପାଇଁ ଉଭୟ ଦଳ ତରଫରୁ ଧାଁଧପଡ଼ ଚାଲିଥାଏ । କଂଗ୍ରେସ, ଝାଡ଼ଖଣ୍ଡ ଓ ଅନ୍ୟାନ୍ୟ ଦଳରୁ ଲୋକଙ୍କ ଦଳତ୍ୟାଗ କରାଇ, ସେମାନଙ୍କୁ ଲୁଚାଇ ତାଙ୍କର ତାଲିକା ଓଡ଼ିଶା ଲାଟ ସାହେବଙ୍କୁ ଦେଇଥାନ୍ତି । ଗଣତନ୍ତ୍ର ପରିଷଦ ମଧ ତାଙ୍କର ସଂଖ୍ୟା ଗରିଷ୍ଠତାର ତାଲିକା ଦାଖଲ କରିଥାନ୍ତି । ଗଣତନ୍ତ୍ର ପରିଷଦର ଅପହୃତ ମେମ୍ବରମାନଙ୍କୁ ଖୋଜାଚାଲିଥାଏ । ଏତିକିବେଳେ ମହାରାଜା କଟକର ରାଣୀହାଟ-ଡାକବଂଗଳାରେ ଅବସ୍ଥାନ କରୁଥାନ୍ତି । ମୁଁ ଓ ଶ୍ରୀଯୁକ୍ତ ସୁନ୍ଦରମଣି ପଟେଲ ମଧ ତାଙ୍କ ସଙ୍ଗରେ ଥାଇ ଗଣତନ୍ତ୍ର ପରିଷଦର ମେମ୍ବରମାନଙ୍କୁ ଉଦ୍ଧାର ପାଇଁ ଧାଁଧପଡ଼ କରୁଥାଉ । ଦିନେ ରାତ୍ରିରେ ହଠାତ୍ ଖବର ମିଳିଲା ଯେ ଚଉଦର ଜଣେ ଗଣତନ୍ତ୍ର ପରିଷଦର ସଭ୍ୟଙ୍କୁ ନେଇ ଗୋଟିଏ ଓ.ଆର୍.ଏନ୍. ନମ୍ବର ଥିବା ଜିପ୍ କଟକ ଆସୁଛି । ତାଙ୍କ ଭାଇ ଜଂଗଲ ବିଭାଗର ଜଣେ କର୍ମଚାରୀ । ତାଙ୍କୁ କୁହାଯାଇଥାଏ ଯେ ଯଦି ତାଙ୍କ ଭାଇଙ୍କୁ କଂଗ୍ରେସରେ ଯୋଗଦାନ କରାଇବାରେ ସାହାଯ୍ୟ କରନ୍ତି ତେବେ ତାଙ୍କୁ ସର୍ବୋଚ୍ଚ ଉପରପାହ୍ୟାକୁ ଉନ୍ନିତ କରାହେବ । ତାଙ୍କର ଜିପ୍ ସେଦିନ ରାତ୍ରରେ ପ୍ରଭାତ ସିନେମା ହଲ୍ ସାମନାରେ ଥିବା ପ୍ରସିଦ୍ଧ ଖାଁ ହୋଟେଲ

ସାମନାରେ ଠିଆହୋଇଥାଏ । ଶ୍ରୀଯୁକ୍ତ ସୁନ୍ଦରମଣି ବାବୁ ସିନେମା ଘର ଭିତରୁ ବାହାରି ଦେଖିଲେ ଯେ ଓ.ଆର୍.ଏନ୍. ଜିପ୍ ସାମନାରେ ଛିଡ଼ା ହୋଇଛି । ସେ ଲାଇଟ୍ ପକାଇ ଦେଖନ୍ତିତ ପଛରେ ଥିବା ୨ ଟି ସିଟ୍ ଉପରେ ବେଡ଼ିଂ ସବୁ ଲଦା ହୋଇଛି ଓ ମଝି ସିଟ୍‌ରେ ଉପରୋକ୍ତ ସଭ୍ୟ ଏକ ଚାଦର ଘୋଡ଼ାଇ ହୋଇ ବସିଛନ୍ତି । ତାଙ୍କୁ ଶ୍ରୀଯୁକ୍ତ ପଟେଲ ଟାଣି, ଘୋଷାରି ଆଣି ତାଙ୍କ ଜିପ୍‌ରେ ବସାଇ ଅର୍ଦ୍ଧରାତ୍ର ସମୟରେ ରାଣୀହାଟ ଡାକବଂଗଳାରେ ମହାରାଜାଙ୍କ ପାଖରେ ହାଜର କରାଇଲେ । ସେତେବେଳେ ହାଡ଼ଭଙ୍ଗା ଶୀତ ମାସ ଓ ଭୀଷଣ ଥଣ୍ଡା । ଉକ୍ତ ମେମ୍ବରଙ୍କୁ ମୁଣ୍ଡରେ ମହାରାଜା ସାମନାରେ ଛିଡ଼ା କରାଇଲା ବେଳକୁ ତାଙ୍କ ଦେହରୁ ନଦୀସ୍ରୋତ ପରି ଝାଳ ନିର୍ଗତ ହୋଇ ତଳକୁ ଓଦା କରିପକାଇଥିଲା । ଗଣତନ୍ତ୍ର ପରିଷଦର କର୍ମୀମାନେ ଆଗରୁ ସନ୍ଦେହ କରିବାରୁ ଉକ୍ତ ମେମ୍ବର ନିର୍ବାଚନବେଳେ ସଭାରେ ତାଙ୍କ ପୁଅ ମୁଣ୍ଡରେ ହାତ ଦେଇ ହଲପ କରିଥିଲେ ଯେ ସେ ଦଳତ୍ୟାଗ କରିବେ ନାହିଁ । ତାଙ୍କୁ ଧରି ଆଣିଲାବେଳେ ଲଜ୍ଜାରେ ତାଙ୍କର ଦେହରୁ ଅସରନ୍ତି ସ୍ୱେଦ ନିର୍ଗତ ହେଉଥିଲା । ମହାରାଜା କହିଲେ ଏପରି ଚୋରଙ୍କ ଭଳି ଲୁଚି ପଳାଉଥିଲ କାହିଁକି ? ଯିବାର ଥିଲା ତ କହିକରିଯାଇ ପାରିଥାନ୍ତ ଯଦି ସତସାହସଥାନ୍ତା, ମହାରାଜା କହିଲେ ତାଙ୍କୁ ଛାଡ଼ି ଦେବାକୁ କାରଣ ସେତେବେଳେ ଗଭର୍ଣ୍ଣର କଂଗ୍ରେସକୁ ସରକାର କରିବାକୁ ନିମନ୍ତ୍ରଣ କରିସାରିଥାନ୍ତି ।

ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ସଂଖ୍ୟା ନ୍ୟୁନ ମନ୍ତ୍ରୀମଣ୍ଡଳ ବହୁକଷ୍ଟରେ ବହୁଖର୍ଚ୍ଚରେ, ଦଳତ୍ୟାଗ କରାଇ ସମ୍ଭାଳିଥାନ୍ତି । ଭୋଟ ବେଳେ କମ୍ୟୁନିଷ୍ଟମାନେ ଅନୁପସ୍ଥିତ ରହୁଥାନ୍ତି । ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ ବିରୁଦ୍ଧ ଦଳର ଆସନ ଅଳଂକୃତ କରି ଠିକ୍ ସମୟକୁ ଅପେକ୍ଷା କରିଥାନ୍ତି ।

ବିଧାନସଭା ଚାଲିଥାଏ । ଦିନେ କଂଗ୍ରେସ ମେମ୍ବରମାନେ ଏକ ଉପନିର୍ବାଚନକୁ ଯାଇ କ୍ଲାନ୍ତ ହୋଇ ବିଧାନସଭା ଗୃହକୁ ଆସିନଥାନ୍ତି ସେତେବେଳେ *Muncipal Volilation* ର ଏକ ଚିଠା ଆଇନ ଆଗତ ହେଲାବେଳେ ଭୋଟ କରାଗଲା କଂଗ୍ରେସ ୪୩ ଓ ବିରୁଦ୍ଧ ଦଳ ୫୧ ଭୋଟରେ ବିଜୟୀ ହେଲେ ଓ ସରକାର ପରାଜିତ ହେଲେ । ମହତାବଙ୍କ ହଂସା ଉଡ଼ିଗଲା ସେ ବିବ୍ରତ ହୋଇ ଆସନରୁ ଉଠିଆସି ମହାରାଜାଙ୍କୁ

କହିଲେ ''ଆମି କ୍ଲାନ୍ତ ଆମି ଶ୍ରାନ୍ତ ଆମାକେ ବିଦାୟ ଦାଓ'' ଏବଂ ସେ ଇସ୍ତଫା ଦେବା କଥା କହିଲେ । କିନ୍ତୁ ମହାରାଜା ପରମ୍ପରା ରକ୍ଷା କରି ମହତାବଙ୍କୁ ପ୍ରବୋଧନା ଦେଇ କହିଲେ ଇସ୍ତଫା ଦେବାର ପ୍ରଶ୍ନ ନାହିଁ । ଏପରି ବହୁବାର ଭାରତର ଲୋକସଭାରେ ହୋଇଛି । ବିବ୍ରତ ହେବାର କାରଣ ନାହିଁ । କେବଳ ଅର୍ଥ ବିଲ୍‌ରେ ପରାସ୍ତ ହେଲେ ଯାଇ ସରକାରଙ୍କୁ ବିପଦ ଆସେ । ଏହାତ ଅର୍ଥ ବିଲ୍ ନୁହେଁ । ଆମେ ସମସ୍ତେ ବିରକ୍ତି ପ୍ରକାଶ କରି ମହାରାଜାଙ୍କୁ କହିଲୁ ଇସ୍ତଫା ଦାବି କରିବା ପାଇଁ କିନ୍ତୁ ସେ କହିଲେ ଗଣତାନ୍ତିକ ମୂଲ୍ୟବୋଧର ଉଚ୍ଚ ପରମ୍ପରା ଦୃଷ୍ଟିରୁ ରେ ଇସ୍ତଫା ଦେବାର ପ୍ରଶ୍ନ ନାହିଁ ଏବଂ ଆମ୍ଭମାନଙ୍କୁ ଇସ୍ତଫା ଦାବି ପ୍ରଶ୍ନରୁ ବିରତ ହେବା ପାଇଁ କହିଲେ । କିନ୍ତୁ ଆଜି କାଲିର ବିରୁଦ୍ଧ ଦଳର ନେତା ହୋଇଥିଲେ ସଂଗେ ସଂଗେ ଇସ୍ତଫା ଦେବା ପାଇଁ କହିଥାନ୍ତେ । ସରକାରୀ ଦଳ ଗଣତନ୍ତ୍ର ପରିଷଦକୁ ଦଳତ୍ୟାଗ କରାଇ, ବିରୁଦ୍ଧ ଦଳକୁ ତଣ୍ଟିଚିପି ହତ୍ୟା କରିବାକୁ ତତ୍‌କାଳୀନ ଓଡ଼ିଶାର କଂଗ୍ରେସ ସରକାର ଚେଷ୍ଟା କରୁଥିଲେ ମଧ ମହାରାଜାଙ୍କ ଏ ମହାନୁଭବତା, ଉଚ୍ଚ ପରଂପରାର ସୃଷ୍ଟି ପାଇଁ ସରକାରୀ ଓ ବିରୁଦ୍ଧ ଦଳକୁ ଆଶ୍ଚର୍ଯ୍ୟାନ୍ୱିତ କରିପକାଇଥିଲା । ମହତାବ୍ ନିଜେଯାଇ ଗର୍ଭର୍ଣ୍ଣରଙ୍କୁ ଇସ୍ତଫା କଥା କହିବାରୁ ଗଭର୍ଣ୍ଣର କହିଲେ କୌଣସି ସଂବିଧାନିକ ସଂକଟ ଉପୁଜି ନାହିଁ ଇସ୍ତଫା ପ୍ରଶ୍ନ ଏହା ମନ୍ତ୍ରୀମଣ୍ଡଳ ବିଚାର କରନ୍ତୁ । ମହତାବ ତାଙ୍କ ଓଡ଼ିଶା ବିଧାନସଭା ତା ୨୪/୨/୫୯ ବକ୍ତବ୍ୟରୁ ଜଣାଯାଏ ଯେ ଭୋଟରେ ହାରିଲାପରେ ସେ ବାଚସ୍ପତିଙ୍କୁ ଏକଥା ବିଚାର କରିବାକୁ ଓ ତାଙ୍କ ବିରୁଦ୍ଧ ଦଳ ନେତା ତଥା ଗଭର୍ଣ୍ଣରଙ୍କ ସହ ସାକ୍ଷାତ ପାଇଁ ସମୟ ଦିଆଯାଉ । ବିରୁଦ୍ଧ ଦଳର ନେତା ଯେ କେବଳ ଇସ୍ତଫା ଦେବା ପାଇଁ ମନା କରିନଥିଲେ ଏକ ବିବୃତ୍ତିର ମଧ ଏ ବିଷୟ ଉଲ୍ଲେଖ କରିଥିଲେ ବୋଲି ମହତାବ ତାଙ୍କ ବିବୃତିରେ ଉଚ୍ଚ ପ୍ରଶଂସା କରିଥିଲେ । ଏହା ମହାରାଜାଙ୍କ ଏକ ''ମହାନୁଭବତା''ର ପରିଚୟ ଦିଏ ।

ଆଉ ଦିନକର କଥା - ବିଧାନସଭା ବଜେଟ ଅଧିବେଶନ ଚାଲିଥାଏ । ଜଂଗଲ ବିଭାଗର ଖର୍ଚ୍ଚ ଦାବି ଆଗତ ହୋଇଥାଏ । ସେ ଦିନର ଶେଷ ବେଳକୁ ଦେଖାଗଲା ଯେ ସରକାରୀ ଦଳ ସଭ୍ୟ ସଂଖ୍ୟା କମ୍ ଅଛି । ଆମ୍ଭେମାନେ ଭୋଟ ଦାବି କରୁ ।

ଡିଭିଜନ ଘଣ୍ଟି ବାଜିଲା କବାଟ ସବୁ ବନ୍ଦ ହେଲା । ସେତେବେଳେ ସରକାରୀ ଦଳର ମୁଖ ମଉଳିଗଲାଣି କାରଣ ସେମାନଙ୍କ ପରାଜୟ ସୁନିଶ୍ଚିତ । ବିରୁଦ୍ଧ ଦଳ ନେତା ମହାରାଜା ସଂଗେ ଆମ ସମସ୍ତଙ୍କୁ ଡାକି କହିଲେ ତମେମାନେ କ'ଣ ଚାହଁ ସରକାରୀ କର୍ମଚାରୀମାନେ ଦରମା ନପାଆନ୍ତୁ । ବଜେଟ୍ ପାଶ ନହେଲେ ସେମାନେ ଦରମା ପାଇବେ ନାହିଁ ତାଙ୍କ ପିଲା କୁଟୁମ୍ବ ମୃତ୍ୟୁବରଣ କରିବେ ଏଣୁ ଭଏସ୍ ଭୋଟରେ ଛାଡ଼ି ଦେବା ପାଇଁ କହିଲେ ଆମେ ସମସ୍ତେ ହଁ ଓ ନାହିଁ (*Yes/ No*)ବେଳେ ସମସ୍ତେ ଚୁପ୍ ରହିଲୁ । ଏହା କ'ଣ ତାଙ୍କ ମହାନୁଭବତାର ନିଦର୍ଶନ ନୁହେଁ । ଆଜି କଂଗ୍ରେସ ଗୋଟାଏ ଭୋଟରେ ସରକାରକୁ ପରାସ୍ତ କରି ୧୦ ହଜାର କୋଟି ଟଂକା ଖର୍ଚ୍ଚ ଲୋକଙ୍କ ଉପରେ ଲଦି ଦେଇ ଭୋଟ ପାଇଥିଲେ ।

ବିଧାନସଭାରେ କୌଣସି ସ୍ୱାଧୀକାର ଭଙ୍ଗ କିମ୍ବା କୌଣସି ପ୍ରଶ୍ନ ଆସିଲେ ସେ ନ୍ୟାୟ ଓ ଉଚିତ ଯୁକ୍ତି ପ୍ରଦର୍ଶନ କରି ଉପଦେଶ ଦେଉଥିଲେ । ସେ ଛିଡ଼ା ହେଲେ ଗୃହରେ ସଂପୂର୍ଣ୍ଣ ନିରବତା (***pin drop silence***) ଲକ୍ଷ୍ୟ କରାଯାଉଥିଲା । ମୋର ମନେ ଅଛି ପୂର୍ବତନ ବିଚାରପତି ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହୀ ବାଚସ୍ପତିର ଆସନ ଅଳଂକୃତ କରୁଥାନ୍ତି ଓ ସଂଖ୍ୟାଧିକ ଭୋଟରେ ସେତେବେଳେ ସରକାର ଚାଲିଥାଏ ତଥାପି ବାଚସ୍ପତି ସମୟ ସମୟରେ ବିରୁଦ୍ଧ ଦଳ ନେତାଙ୍କ ମତାମତ ଲୋଡ଼ିଲେ ଯେ ନିରପେକ୍ଷ ମତ ପ୍ରଦାନ କରୁଥିଲେ । ଟିକିଏ ପରେ ଏହାର ନଜିର ମିଳିବ ।

ମେୟରମାନେ ବିରୁଦ୍ଧ ଦଳର ହୁଅନ୍ତୁ ବା ସରକାରୀ ଦଳର ହୁଅନ୍ତୁ ତାଙ୍କର ସ୍ୱାଧୀନତା ବଜାୟ ରଖିବା ପାଇଁ ସେତେବେଳେର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀ ନମସ୍ୟ ।

କଳାହାଣ୍ଡିର ଏମ୍.ଏଲ୍.ଏ. ଶ୍ରୀଯୁକ୍ତ ମହେଶ୍ୱର ନାୟକଙ୍କୁ ପୋଲିସ୍ ବନ୍ଦୀକରି ବିଧାନସଭା ଚାଲିଥିବାବେଳେ ବିନା ଅନୁମତିରେ ଜେଲକୁ ପଠାଇଥିଲେ । ଉକ୍ତ ସଭ୍ୟ ବିଧାନସଭାର ନୋଟିସ୍ ଦେଖାଇଲେ ମଧ୍ୟ ଜିଲ୍ଲା କଲେକ୍ଟର ତାଙ୍କୁ ଛାଡ଼ିଲେ ନାହିଁ । ଏ ବିଷୟ ବିଧାନସଭାରେ ଆଲୋଚନା ହୋଇ ନିଷ୍ପତ୍ତି ହେଲା ଯେ ଏଥିରେ ବିଧାନସଭାର

ସ୍ୱାଧିକାର ଭଙ୍ଗ ହୋଇଛି । ତେଣୁ ନିୟମ ଅନୁସାରେ ଗୃହର ନେତା ତଥା ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀ ପ୍ରସ୍ତାବ (**Resolution**) ଆଣି ଉଚ୍ଚ ପଦବୀ ରକ୍ଷା କରିଥିଲେ । ବିଧାନସଭାର ଗୃହର ମର୍ଯ୍ୟାଦା ଯେ କେବଳ ବିରୁଦ୍ଧ ଦଳର ନେତା ଓ ମୁଖ୍ୟମନ୍ତ୍ରୀ ରକ୍ଷା କରିବେ ତାହା ନୁହେଁ । ଉଭୟ ଲୋକେ ମିଶି ନିଜ ଦଳର ସଭ୍ୟମାନଙ୍କୁ ନିୟନ୍ତ୍ରଣ କରି ପବିତ୍ର ଗୃହର ମର୍ଯ୍ୟାଦା ଓ ଉଚ୍ଚ ପରଂପରାର ରକ୍ଷା କରିବେ ଆଜିକାଲି କ'ଣ ଏକଥା ବିଚାର ହେଉଛି ?

ବିଧାନସଭାରେ ସ୍ୱତନ୍ତ୍ର ଉତ୍କଳ କଂଗ୍ରେସ ମନ୍ତ୍ରୀ ମଣ୍ଡଳ ଚାଲୁଥିଲା । ସରକାର ପତନ ପରେ ବିଧାନସଭାରେ ବିରୁଦ୍ଧ ଦଳରେ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ, ବିଶ୍ୱନାଥ ଦାସ ଆଦି ବସିଥାନ୍ତି । ଏକ ମୁଲତବୀ ପ୍ରସ୍ତାବରେ ବିଜୁ ପଟ୍ଟନାୟକ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ ଆଦି ଆମେ ସମସ୍ତେ ଦସ୍ତଖତ କରି ଥାଉଁ ଶ୍ରୀଯୁକ୍ତ ବ୍ରଜମୋହନ ମହାନ୍ତି ବାଚସ୍ପତି ଥାନ୍ତି । ସେ ଉକ୍ତ ପ୍ରସ୍ତାବ କଣ ଠିକ୍ ଅଛି ବୋଲି ମହାରାଜାଙ୍କୁ ପଚାରିଲେ । ମହାରାଜା ଦସ୍ତଖତ କରିଥିଲେ ମଧ ସେ ନାହିଁ ବୋଲି କହିଲେ । ଗୃହରେ ହେଲା ଟେବୁଲ ବାଡ଼ିଆ, କରତାଳି, ଏବଂ ଏ ଉଚ୍ଚ ପରମ୍ପରାର ରକ୍ଷା ପାଇଁ ସେ ସର୍ବଜନ ଆଦୃତ ଥିଲେ ।

ବିଧାନସଭାରେ ରୌପ୍ୟ ଜୁବୁଲି ପାଇଁ ଦିନ ନିର୍ଦ୍ଦିଷ୍ଟ ହୋଇଥାଏ । ସେ ଦିନ ମହାରାଜାଙ୍କୁ ବହୁତ ଜ୍ୱର ହୋଇଥାଏ । ମୁଁ ତାଙ୍କ ପାଖକୁ ଯାଇ ଐତିହାସିକ ଦିନ ନଆସିଲେ ଠିକ ହେବ ନାହିଁ ବୋଲି କହିଲି । ତାଙ୍କୁ ଧରି ବିଧାନସଭାକୁ ଆଣିଲି ସେଥିଲେ ବିରୁଦ୍ଧ ଦଳର ନେତା । ତାଙ୍କର ଆସନରେ ବସିଲାକ୍ଷଣି ନନ୍ଦିନୀ ଦେବୀ ନିଜ ଆସନରୁ ଉଠିଆସି କହିଲେ ତାଙ୍କୁ କେମିତି ଲାଗୁଛି ? ମହାରାଜା କହିଲେ ଓଡ଼ିଶାକୁ ଶାସନ କରିବାକୁ ଆସିଛି । ଭୟ କରିବାର କାରଣ ନାହିଁ । ସେ ତାଙ୍କ ତରଫରୁ **constructive opposition**ର ପ୍ରସ୍ତାବ ସବୁବେଳେ ଉଠାଇ ସରକାରଙ୍କୁ ସାହାଯ୍ୟ ଦେବେ । ଏହା କହିଲାବେଳକୁ ସେଠାରେ ଉପସ୍ଥିତ ଥିଲି । ସେ ଭାଷଣ ଦେଇ ସଭା ସାଙ୍ଗ ହେଲାପରେ ଖୁବ ଅବଶ ଦେଖାଯାଉଥିଲେ । ମୁଁ ତାଙ୍କୁ ଧରି

ତାଙ୍କ ଗାଡ଼ିରେ ବସାଇ ଦେଇଥିଲି । ପରେ ସେହି ନନ୍ଦିନୀ ଶତପଥୀ ଆମ୍ଭମାନଙ୍କୁ ବହୁତ ହଇରାଣ କରିଥିଲେ । ରାଜନୈତିକ ଜୀବନ ସହିତ ପାରିବାରିକ ଜୀବନରେ ମଧ୍ୟ ସ୍ୱର୍ଗତ ମହାରାଜା ବିନୟୀ, ସ୍ନେହୀ ଏବଂ ଉଦାର ଥିଲେ । ନିମ୍ନ ଘଟଣାରୁ ଏହା ସ୍ପଷ୍ଟ ହୁଏ ।

ସ୍ୱର୍ଗତ ମହାରାଜା ପାଟଣା ତାଙ୍କ ବଡ଼ପୁଅର ବହାଘର ପାଇଁ ରାଜ୍ୟର ସମସ୍ତ, ମାନ୍ୟଗଣ୍ୟ ପ୍ରଜା ଓ ମୁଖ୍ୟ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରିଥାନ୍ତି ଏବଂ ସେସମସ୍ତଙ୍କ ରହଣି ପେଲେସ ଭିତରେ ବନ୍ଦୋବସ୍ତ କରିଥାନ୍ତି· ସମସ୍ତ ଖାଇବା, ରହିବା ଆଦି ନିଜେ ବୁଲି ତଦାରଖ କରୁଥାନ୍ତି । ମୁଁ ମଧ୍ୟ ସେହି ବାହାଘର ପାଇଁ ନିମନ୍ତ୍ରିତ ହୋଇଥାଏ ।

ବାହାଘର ପାଇଁ ଟ୍ରେନ୍ ରିଜର୍ଭ ହୋଇଥାଏ । ସମସ୍ତଙ୍କୁ ବମ୍ବେ ଯିବା ପାଇଁ ଠିକ୍ ହୋଇଥାଏ । କାରଣ ବାହାଘର ବମ୍ବେରେ ହେଉଥାଏ । ମହାରାଜା "ରାଜ ପିପଲା" ଙ୍କ ଝିଅ ସହ ତାଙ୍କ ଜେଷ୍ଠପୁତ୍ରର ବିବାହ ନିଷ୍ପତ୍ତି କରିଥାନ୍ତି ।

ବମ୍ବେର ଦୁଇଟି ପାଖାପାଖି ହୋଟେଲ ଅଷ୍ଟ୍ରେଲା ଓ ଓଏଥାର ଲାଇନ ରିଜର୍ଭ ହୋଇଥାଏ । ବଡ଼ ବଡ଼ ରାଜା ମହାରାଜାମାନେ ମଧ୍ୟ ନିମନ୍ତ୍ରିତ ହୋଇ ଆସିଥାନ୍ତି ବିବାହ ମଣ୍ଡପର ଦୁଇ କଡ଼ରେ ଓ ସାମନାରେ ଏକ ବିସ୍ତିର୍ଣ୍ଣ ପଡ଼ିଆରେ ଅତିଥିମାନଙ୍କ 'ଖାନ ପାନ' ବନ୍ଦୋବସ୍ତ ହୋଇଥାଏ ଓ ବିବାହ ମଧ୍ୟ ସମସ୍ତଙ୍କ ସମ୍ମୁଖରେ ଚାଲିଥାଏ ।

ବିବାହ ପାଇଁ କଟକର ଚିତ୍ରଶିଳ୍ପୀମାନେ ସାଜସଜ୍ଜା କରିଥିଲେ । ବରଯାତ୍ରୀ ଚାଲିଥାଏ । ସର୍ବାଗ୍ରେ ବେଣ୍ଡବାଜା, ତାପଛକୁ ସମସ୍ତ ରାଜାମହାରାଜାମାନେ ପଗଡ଼ି ଖଣ୍ଡା ଆଦିଧରି ଚାଲିଥାନ୍ତି । ତା ପଛକୁ ସୈନ୍ୟ ପ୍ରଜା ଓ ଅନ୍ୟାନ୍ୟ ଭଦ୍ରବ୍ୟକ୍ତି ଚାଲୁଥାନ୍ତି । ସବାପଛରେ ଉଡନ୍ତା ରଥ ଭଳି ସଜାହୋଇଥିବା ବା ଉଡ଼ନ୍ତା ଡେଣାଥିବା ଘୋଡ଼ା ଯୋଚା ଯାଇଥାଏ ଏବଂ ତହିଁରେ ତାଙ୍କ ଜ୍ୟେଷ୍ଠପୁତ୍ର ଆସୀନ ହୋଇ ଶୋଭାଯାତ୍ରା ଚାଲୁଥାଏ । ସେଠାରେ ପହଞ୍ଚିଲା ପରେ ବିବାହ କାର୍ଯ୍ୟ ଆରମ୍ଭ ହେଲା । ବିବାହ ଶେଷ ବେଳକୁ ଅତିଥୀମାନଙ୍କୁ ଦିବ୍ୟ ଭୋଜନର ବ୍ୟବସ୍ଥା ମଧ୍ୟ ସେଠାରେ ହୋଇଥାଏ । ସମସ୍ତଙ୍କୁ ନିମନ୍ତ୍ରଣ କରିଖାଇବାକୁ କୁହାଯାଉଥାଏ । ମୁଁ ସେଠି ହୋଟେଲର ଏକ

କୋଠରୀରେ ଶ୍ରୀଯୁକ୍ତ ମୂରଲୀଧର ପଣ୍ଡା (ଏମ୍.ଏଲ୍.ଏ)ଙ୍କ ସହ ଅବସ୍ଥାନ କରୁଥାଏ । ବିବାହ ବେଳେ ମଧ୍ୟ ତାଙ୍କ ସହ ଆସିନ ହୋଇଥାଏ । ଯେତେବେଳେ ନିମନ୍ତ୍ରଣ ପାଇଁ କୁହାଗଲା ଶ୍ରୀଯୁକ୍ତ ମୂରଲୀଧର ପଣ୍ଡା ଅନୁଭବ କଲେ ଯେ ସେ ନିମନ୍ତ୍ରିତ ହୋଇନାହାନ୍ତି । ତେଣୁ ବେଦିରୁ ଉଠି ହୋଟେଲ ଅଭିମୁଖେ ଚାଲିଲେ ଏବଂ ମୋତେ ମଧ୍ୟ ଯିବାକୁ କହିଲେ । ମୁଁ ନଯିବାରୁ ନାନା ପ୍ରକାର ଭର୍ତ୍ସନା ମଧ୍ୟ କଲେ । ମୁଁ ଅଗତ୍ୟା ତାଙ୍କ ସହ ନଖାଇ ହେଟେଲରୁ ଆସିଲି । ମହାରାଜା ରାଜ ପିପଲାଙ୍କ ଦେବାନ ଆଦି ସର୍ବୋଚ୍ଚ କର୍ମକର୍ତ୍ତାମାନେ ତାଙ୍କୁ ବାରଣ କଲେ ଫେରିଯିବା ପାଇଁ କିନ୍ତୁ ସେ ମାନିଲେ ନାହିଁ ଆମ୍ଭେ ଦୁଇ ଜଣ ହୋଟେଲକୁ ଫେରି ନଖାଇ ଶୋଇଲୁ । ଭୋର ସକାଳୁ ମହାରାଜା ପାଟଣା ନିଜେ ଆସି ଯୋଡ଼ହସ୍ତରେ ମୂରଲୀଧର ପଣ୍ଡାଙ୍କୁ କ୍ଷମା ମାଗିଲେ । ଶ୍ରୀଯୁକ୍ତ ପଣ୍ଡା କହିଲେ ମହାରାଜାଙ୍କ ନିଜ ଦୋଷ ନାହିଁ କିନ୍ତୁ ମହାରାଜା କହିଲେ ଯେହେତୁ ତାଙ୍କୁ ସେ ବରଯାତ୍ରୀଭାବେ ଆଣିଛନ୍ତି ତାଙ୍କ ଖାଇବା କଥା ତାଙ୍କ ଲୋକ ବୁଝିବା କଥା । ସେ ସେଠାରୁ ନଖାଇ ଆସିଛନ୍ତି ଭଲକରିଛନ୍ତି କିନ୍ତୁ ତାଙ୍କ ଲୋକ କାହିଁକି ତାଙ୍କୁ ଖାଇବାକୁ ଦେଲେ ନାହିଁ ତେଣୁ ସେ ନିଜେ ଦୋଷୀ ଓ କ୍ଷମା ପ୍ରାର୍ଥୀ । ଆଶ୍ଚର୍ଯ୍ୟ ମହାରାଜଙ୍କ ଯୁକ୍ତି ଓ କ୍ଷମା ପ୍ରାର୍ଥନା ତାଙ୍କ ମହନୀୟତା । ସେଥିପାଇଁ ଆଉ ଥରେ ସକାଳେ ହୋଟେଲର ସମସ୍ତଙ୍କୁ ପୁଣି ଏକ ଭୋଜିର ନିମନ୍ତ୍ରଣ କରାଗଲ । ମହାରାଜାଙ୍କ ଏ ମହନୀୟତା ଆଜିର ଗୁଣ୍ଡା ମହାଜନମାନଙ୍କଠାରେ କ୍ୱଚିତ ଦେଖିବାକୁ ମିଳିବ ।

➢ **ଏ ଲେଖା ଅତୀତର "ଦୈନିକ ସ୍ୱରାଜ୍ୟ" ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏଥିରେ କିଛି ପରିବର୍ଦ୍ଧିତ ଓ ପରିମାର୍ଜିତ ହୋଇଛି ।**

# ମହାରାଜାଙ୍କ ମହାଯାତ୍ରା

ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ବମ୍ବେର ଯଶଲୋକ ହାସପାତାଳରେ ଚିକିତ୍ସିତ ହେଉଥିଲାବେଳେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ତା ପୂର୍ବରୁ ସେ ଏକଦମ୍ ଠିକ୍ ଥିଲେ ଏବଂ ଓଡ଼ିଶା ଫେରିବା ପାଇଁ ଟିକେଟ ଆଦିର ମଧ ବନ୍ଦୋବସ୍ତ ହୋଇସାରିଥିଲା । କିନ୍ତୁ ହଠାତ୍ ସେ ବିଶେଷ ଭାବରେ ଅସୁସ୍ଥ ହୋଇ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।

ସେତେବେଳେ ଓଡ଼ିଶାରେ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ବିରୁଦ୍ଧ ଦଳର ନେତା ନିଯୁକ୍ତି ହୋଇସାରିଥିଲେ । ଜୀବନ ଶେଷ ପର୍ଯ୍ୟନ୍ତ ଶ୍ରୀ ସିଂହ[illegible] ତାଙ୍କ ସରକାରୀ ବାସଭବନରେ ରହୁଥିଲେ । ସେଠାରେ ତାଙ୍କର ମୃତ୍ୟୁବେଳକୁ ତାଙ୍କ ପରିବାରର କେହି ନଥିଲେ । ମୁଁ ବିଧାନସଭା ସଦସ୍ୟ ଥାଇ ତାଙ୍କ ବାସଭବନର ସବୁକଥା ବୁଝୁଥିଲି । ତାଙ୍କ ମୃତ୍ୟୁ ସଂବାଦ ପ୍ରଚାରିତ ହେବା ସଂଗେ ସଂଗେ ଦୋକାନ, ,ବଜାର, ସ୍କୁଲ, କଲେଜ, ସରକାରୀ ଅଫିସ ସବୁ ବନ୍ଦ ହୋଇ ଜାତୀୟ ପତାକା ଅର୍ଦ୍ଧନମିତ ହୋଇ ସରକାରୀ କାର୍ଯ୍ୟାଳୟରେ ତଥା ସେକ୍ରେଟାରୀଏଟ୍‌ରେ ଉଡୁଥିଲା ।

ମୁଁ ତାଙ୍କ ବାସଭବନ ଅଫିସରେ ବସିଛି ହଠାତ୍ ବିଜୁ ବାବୁ ଆସି କହିଲେ ଦିନ ପ୍ରାୟ ୧୦ ଟା ବେଳେ ଯେ ତୁ ଅନଙ୍ଗଙ୍କୁ ଫୋନ କରି କୁହ ସେ ତାଙ୍କ ମରଶରୀରକୁ ଧରି ଭୁବନେଶ୍ୱର ଆସୁ । କାରଣ ସେ ବିଜୁ ବାବୁଙ୍କୁ କହିଥିଲେ ଯେ ଯେଉଁଠି ଯାହା ହେଲେ ମଧ ତାଙ୍କ ମରଶରୀରକୁ ଓଡ଼ିଶା ଆଣି ଶେଷକୃତ୍ୟ ସମାପନ କରାଯିବ । ସେ ଅନୁସାରେ ଶ୍ରୀଯୁକ୍ତ ଅନଙ୍ଗ ଉଦୟ ସିଂହଦେଓ ପଞ୍ଚାୟତ ସାହେବଙ୍କୁ ଫୋନରେ ଜଣାଇଲି ।

ମଝିରେ ମୁଁ ଶୁଣିଲି ଯେ ମହାରାଷ୍ଟ୍ର ସରକାର ଏକ ବିମାନ ଦେଇଥିଲେ । ସେ ସମୟରେ ସେଠାରେ ମଧ ଓଡ଼ିଶା ସରକାରଙ୍କ ବିମାନ ମହଜୁଦ ଥିଲା ଓ ତାକୁ ମଧ ଦେବା ପାଇଁ ବନ୍ଦୋବସ୍ତ ହୋଇଥିଲା । କିନ୍ତୁ ଯେତେବେଳେ ମରଶରୀର ଆସି ଉଡ଼ାଜାହାଜ ,ପଡ଼ିଆରେ ପହଂଚିଲା କୌଣସି ବିମାନ ନଥିଲା । ରାଜନୈତିକ କାରଣରୁ ବିରୋଧରେ ଥିବା ଲୋକେ ତାଙ୍କ ମରଶରୀର ଓଡ଼ିଶାକୁ ନଆସିବା ପାଇଁ ଚକ୍ରାନ୍ତ କରିଥିଲେ ।

କିନ୍ତୁ ତାଙ୍କ ପୁତ୍ର ପଟ୍ଟାୟତ ସାହେବ ଶ୍ରୀ ଅନଙ୍ଗ ଉଦୟ ସିଂହଦେଓ ତାହା ଜାଣିପାରି ହଠାତ ସେ ବିମାନ ବନ୍ଦରରେ ଏକ ଘରୋଇ ବିମାନ ଭଡ଼ାସୂତ୍ରରେ ଠିକ୍ କରି ମର ଶରୀରକୁ ଓଡ଼ିଶା ଆଣିଥିଲେ । ସେ ଉକ୍ତ କମ୍ପାନୀକୁ ଏକ ଚେକ୍ ଦେଇ ବିମାନ ଭଡ଼ାରେ ଆଣିଲେ ଓ ଓଡ଼ିଶା ଆସି ବେଙ୍କରେ ବିମାନ ଭଡ଼ା ଟଂକା ଜମା କରି ଦେଇଥିଲେ । ବିମାନ ଭୁବନେଶ୍ୱରରେ ପହଂଚିଲା ପ୍ରାୟ ୪/୫ ବେଳେ । ସେଠାରୁ ପୂର୍ଣ୍ଣ ମର୍ଯ୍ୟଦା ପ୍ରଦାନ ପରେ ତାଙ୍କ ମରଶରୀରକୁ ତାଙ୍କ ସରକାରୀ ବାସଭବନକୁ ଅଣାଯାଇ ଲୋକଙ୍କ ଦର୍ଶନ ପାଇଁ ଅଳ୍ପ ସମୟ ପାଇଁ ରଖାଯାଇଥିଲା ଓ ତୁରନ୍ତ ବଲାଙ୍ଗୀର ଯାତ୍ରା ଆରମ୍ଭ ହୋଇଥିଲା । କାରଣ ତାଙ୍କ ମୃତ୍ୟୁ ସମ୍ବାଦ ଜିଲ୍ଲାରେ ପ୍ରଚାରିତ ହେବା ସଂଗେ ସଂଗେ ଲକ୍ଷ ଲକ୍ଷ ଲୋକ ଦୂରଦୂରାନ୍ତରୁ ଆସି ବଲାଙ୍ଗୀର ସହରରେ ଡ଼େରାପକାଇ ତାଙ୍କ ପୂଜ୍ୟ ମହାରାଜାଙ୍କୁ ଶେଷ ଦର୍ଶନ କରିବା ପାଇଁ ଅପେକ୍ଷା କରିଥିଲେ ।

ସନ୍ଧ୍ୟା ସମୟରେ ତାଙ୍କ ଶବଯାତ୍ରା ଭୁବନେଶ୍ୱରରୁ ବଲାଙ୍ଗିର ଅଭିମୁଖେ ଯାତ୍ରା କରିଥିଲା । ସାଙ୍ଗରେ ତାଙ୍କ ପରିବାରର ଲୋକଙ୍କ ସହ ଓଡ଼ିଶା କଂଗ୍ରେସ ମନ୍ତ୍ରୀମଣ୍ଡଳର କେତେକ ସଭ୍ୟ, କଲେକ୍ଟର, ଏମ୍.ଏଲ୍.ଏ ମାନେ ଓ ବିରୁଦ୍ଧ ଦଳର ନେତା ବିଜୁ ବାବୁ ମଧ ଯାତ୍ରା କରିଥିଲେ । ମୁଁ ସବା ଶେଷରେ ଦୁଇ ତିନିଘଣ୍ଟା ପରେ ଭୁବନେଶ୍ୱରର ସବୁ କାମ ସାରି ଯାତ୍ରା କରିବା ପାଇଁ ବିଜୁ ବାବୁ ନିର୍ଦ୍ଦେଶ ଦେଇଥିଲେ ।

ଆଶ୍ଚର୍ଯ୍ୟ କଥା ମୁଁ ପ୍ରାୟ ୨/୩ ଘଣ୍ଟାପରେ ବାହାରି ଆସିଲା ପରେ ଶବଯାତ୍ରାକୁ ନୟାଗଡ଼ରେ ଦେଖି ସ୍ତମ୍ଭୀଭୂତ ହେଲି । ତୁରନ୍ତ ଯାଇ ପଟ୍ଟାୟତ ସାହେବଙ୍କୁ ଏ.ବିଳମ୍ବ କଥା କ'ଣ ପଚାରିଲି । ସେ କହିଲେ ପୋଲିସ ଗାଡ଼ି ଶବ-ବାହକ ହୋଇ ପ୍ରତି ମାଇଲରେ ଖରାପ ହେଉଛି ଏଣୁ ଏ ବିଳମ୍ବ । କଂଗ୍ରେସ ଲୋକେ ଚାହାଁନ୍ତି ଯେ ଶବ ବଲାଙ୍ଗିର ସହରରେ ଡ଼େରିରେ ପହଂଚିଲେ ଲୋକେ ବିରକ୍ତ ହୋଇ ନିଜ ଘରମାନଙ୍କୁ ବାହୁଡ଼ିଯିବେ । ସଙ୍ଗେ ସଙ୍ଗେ ପଟ୍ଟାୟତ ସାହେବ ମୁଁ ଓ ତାଙ୍କ ବଡ଼ଭାଇ ନିଷ୍ପତ୍ତି କଲୁ ଯେ ଏକ ଭଡ଼ା ଟ୍ରକ୍‌ରେ ଶବକୁ ନେଇଯିବା । ତୁରନ୍ତ ଏକ ଭଡ଼ା ଟ୍ରକ ଠିକ୍ କରି

ଶବକୁ ଉକ୍ତ ଟ୍ରକରେ ପୋଲିସ ଗାଡ଼ିରୁ ଆଣି ଲଦି ଯାତ୍ରା ଆରମ୍ଭ କଲୁ । ପୋଲିସ ଗାଡ଼ି ଆଉ ଖରାପ ହେଲା ନାହିଁ ପଛେ ପଛେ ଆସିଲା । ବାଟରେ ବଉଦ, ସୋନପୁର ଆଦି ସ୍ଥାନରେ ଲୋକେ ପୁଷ୍ପ ଗୁଚ୍ଛ ଆଦି ଦେଇ ନିଜ ନିଜର ଶ୍ରଦ୍ଧାଂଜଳୀ ଜ୍ଞାପନ କରୁଥିଲେ । ପ୍ରାୟ ଦିନ ୧୦/୧୧ଟା ବେଳକୁ ବଲାଙ୍ଗିର ପେଲେସରେ ପହଞ୍ଚିଲୁ । ବଲାଙ୍ଗିର ପାଖାପାଖି ହେଲାବେଳକୁ ପୋଲିସ ଗାଡ଼ିର ଲୋକେ ଆସି ତାଙ୍କ ଗାଡ଼ିରେ ଶବ ନେବା ପାଇଁ ଅନୁରୋଧ କରିଥିଲେ । ଯାହାହେଉ ମରଶରୀର ପେଲେସ୍ ପହଁଞ୍ଚିଲା ପରେ ତାଙ୍କ ଜ୍ୟେଷ୍ଠ ପୁତ୍ରଙ୍କର ଅଭିଷେକ ହେଲା ଓ ସେ ଶବ ସଂସ୍କାର ପାଇଁ ଆଦେଶ ଦେଲେ । ପୁଣି ଏକ ସୁସଜ୍ଜିତ ଟ୍ରକରେ ଶବ ସତ୍କାର ପାଇଁ ନିଆଗଲା । ଶବ ସଂସ୍କାର କାର୍ଯ୍ୟ ସଂପୂର୍ଣ୍ଣ ହେଲାପରେ ବଲାଙ୍ଗିର ରାଜେନ୍ଦ୍ର ପାର୍କରେ ବିଜୁ ବାବୁଙ୍କ ଅଧକ୍ଷତାରେ ଏକ ଶୋକସଭା ଅନୁଷ୍ଠିତ ହୋଇଥିଲା । ବିଜୁ ବାବୁ ସେଠାରେ ବଲାଙ୍ଗିରବାସୀଙ୍କ ଉଦ୍ଦେଶ୍ୟରେ କହିଲେ ''ମୁଁ କହୁଛି ତମର ଭାଇ ଭାବରେ ତମମାନଙ୍କର ସବୁ ସେବା କରିବି ଓ ମହାରାଜାଙ୍କ ଭାର ବହନ କରିବି ।'' ବଲାଙ୍ଗିରର ଅଗଣିତ ଶୋକାକୁଳ ଜନତା ସେ ଦିନରୁ ବିଜୁ ବାବୁଙ୍କ ପ୍ରତି ଅଶେଷ ଶ୍ରଦ୍ଧା ସହ ତାଙ୍କ ଆନୁଗତ୍ୟ ସ୍ୱୀକାର କରିଥିଲେ । ଶେଷ ପର୍ଯ୍ୟନ୍ତ ତାହା ନିର୍ବାଚନମାନଙ୍କରେ ପ୍ରତିଫଳିତ ହୋଇଥିଲା ।

ସେତେବେଳେ ଟେଲିଗ୍ରାମ ଚିଠି ଆଦି ଆସିପହଞ୍ଚୁଥିଲା । ବିଭିନ୍ନ ଦଳ, ବିଶିଷ୍ଟ ବ୍ୟକ୍ତି ଆଦିଙ୍କ ଶୋକବାର୍ତ୍ତାମାନ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହେଉଥିଲା । ସେତେବେଳେ ତା ୨୭/୨/୧୯୭୫ ''ସମାଜ''ରେ ବିଶେଷ ବିବରଣୀ ଓ ବିମାନ ବନ୍ଦରରେ ଶବ-ବହନ ଆଦି ଫଟୋଚିତ୍ର ଓ ତା ୨୫/୨/୧୯୭୫ ତାରିଖରେ ତାଙ୍କ ମରଦେହର ବଲାଙ୍ଗିରରେ ସଂସ୍କାର ଆଦି ଖବର ବିଶେଷ ଭାବରେ ଉଲ୍ଲିଖିତ ଓ ପ୍ରକାଶିତ ହୋଇଥିଲା ।



# A GREAT PARLIAMENTARIAN & GENTLEMAN

**• SHRI BIJU PATNAIK**



This is a very sad day for this August Assembly that one of the great stalwarts of this House has suddenly passed away yesterday at



8.45 P.M. I join the feelings and expressions of the Finance Minister in respect of Shri Rajendra Narayan Singh Deo, one

**A HERO'S FAREWELL TO ANOTHER**

What Biju Patnaik the then leader of opposition and an ex-Chief Minister himself spoke about the departed MAHARAJA another chief Minister of Orissa and also a former leader of opposition in Orissa Assembly.

of our elder colleagues. But here I may add that we have lost in him a great parliamentarian, we have lost in him a great gentleman. Sir, you know that while he and I were sitting in this House in the past, we were the bitterest political opponents of each other. You know, Sir, that for political purpose he had done various actions against the party - at that time the Congress party. But never did he do anything outside the political sphere

undemocratically. Therefore, I call him the greatest parliamentarian In his dealings as Government, as an administrator, he was above board he was fair, he was just and he was honest. He was the best of the Leaders of the Opposition. Today I am the Leader of the Opposition. But I feel that I cannot even touch the fringes of the Parliamentary acumen as the Leader of the Opposition. As the Leader of the Government I have seen how much respect and consideration he showed to every member of the Opposition. As a true democrat, he would take down notes as Chief Minister and we have seen as Chief Minister and Leader of the House, he never left his seat during the sessions as we see others doing. He never left the House to do the file works. He did everything inside the House. Therefore, he got the proper respect of the House. As the Leader of the House, as the Head of the Government, he would reply to every point raised by the Opposition. Opposition may not agree with him, and in a democracy, it is not necessary to agree, but he would try to meet every point raised, in his own way. These are the qualities which every democratic leader should have, so that the standards left behind by him, can be followed by others. In his passing away Orissa Assembly has lost a person which would be very difficult to fill in. I am sure that while he has left us we would wish this Assembly where he spent most of his time would show such standards and enthusiasm.

I would like to convey the wishes of the House, its tenderest condolence to the bereaved family and to convey that our hearts go to them in their saddest moments.

(Extract from the Speech on 24.2.75. in Orissa Assembly.)



# ଲେଖକ ପରିଚିତି



ବଲାଙ୍ଗିର ଜିଲ୍ଲାର ପାଟଣାଗଡ଼ ନିକଟସ୍ଥ ବଥର୍ଲା ଗ୍ରାମରେ ୧୯୨୮ ମସିହା ଜାନୁଆରୀ ୧ ତାରିଖରେ ଜନ୍ମଗ୍ରହଣ କରିଥିବା ଶ୍ରୀ ଅର୍ଜ୍ଜୁ ସାହୁ କଳା ଓ ଆଇନରେ ସ୍ନାତକ ହାସଲ କରିବାପରେ ସକ୍ରିୟ ରାଜନୀତିରେ ଯୋଗଦାନ କରଛି । ସେ ୧୯୫୭ ମସିହାରୁ ୧୯୭୭ ମସିହା ପର୍ଯ୍ୟନ୍ତ ପାଟଣାଗଡ଼ ଓ ସର୍ଣ୍ଣତଳା ନିର୍ବାଚନ ମଣ୍ଡଳୀର ପ୍ରତିନିଧିଭାବରେ ବିଧାନସଭାରେ ନିଜର ଦକ୍ଷତା ପ୍ରତିପାଦନ କରିଛନ୍ତି । ୧୯୭୭ ଲୋକସଭା ନିର୍ବାଚନରେ ବଲାଙ୍ଗିର ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରି ବିଜୟୀ ହୋଇଥିଲେ । ଏପ୍ରିଲ ୧୯୭୧ରୁ ଜୁନ୍ ୧୯୭୨ ପର୍ଯ୍ୟନ୍ତ ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳରେ ପୂର୍ତ୍ତ, ପରିବହନ ଓ ଜଙ୍ଗଲ ମନ୍ତ୍ରୀ ଭାବରେ କାର୍ଯ୍ୟ କରିଥିଲେ । ୰ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ (୧୯୯୦-୯୫) ଅର୍ଜ୍ଜୁ ସାହୁ ବନ ଉନ୍ନୟନ ନିଗମର ଅଧକ୍ଷ ଥିଲେ । ଶ୍ରୀ ସାହୁ ନିକଟରେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ଅଧକ୍ଷ ଭାବେ ରାଜ୍ୟ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଛନ୍ତି ।

ଓଡ଼ିଶା କୃଷକ ସମାଜ, ପୂଜ୍ୟପୂଜା ପରିଷଦ, ୟୁଥ୍ ହଷ୍ଟେଲ ପ୍ରଭୃତି ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସେ ଘନିଷ୍ଠଭାବେ ସଂପୃକ୍ତ । ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଘନିଷ୍ଠ ସହଯୋଗୀ ଅର୍ଜ୍ଜୁ ସାହୁଙ୍କ ପୁସ୍ତକ ମହାନୁଭବ ମହାରାଜା ସିଂହଦେଓଙ୍କ ବହୁମୁଖୀ ବ୍ୟକ୍ତିତ୍ୱକୁ ପରିସ୍ଫୁଟ କରିବା ସଂଗେ ସଂଗେ ଓଡ଼ିଶା ରାଜନୀତିର ଗତି ଓ ପ୍ରକୃତି ସଂପର୍କରେ ସମ୍ୟକ ଚିତ୍ର ପ୍ରଦାନ କରେ ।